ଏହି ପୁସ୍ତକର ଅନ୍ତଃପ୍ରଚ୍ଛଦରେ ଆନୁମାନିକ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ ରଚିତ ଭାସ୍କର୍ଯ୍ୟର ପ୍ରତିଲିପି ମୁଦ୍ରିତ ହୋଇଛି । ନାଗାର୍ଜ୍ଜୁନକୋଣ୍ଡାର ଏହି ଧ୍ୱଂସାବଶେଷ ବର୍ତ୍ତମାନ ନୂଆଦିଲ୍ଲୀର ନ୍ୟାସନାଲ ମ୍ୟୁଜିୟମରେ ସଂରକ୍ଷିତ । ଏହି ଭାସ୍କର୍ଯ୍ୟର ବିଷୟ ରାଜା ଶୁଦ୍ଧୋଦନଙ୍କ ରାଜସଭାରେ ତିନିଜଣ ଜ୍ୟୋତିଷୀ ଭଗବାନ ବୁଦ୍ଧଙ୍କ ଜନନୀ ମାୟାଦେବୀଙ୍କ ସ୍ୱପ୍ନର ତାତ୍ପର୍ଯ୍ୟ ବ୍ୟାଖ୍ୟା କରୁଛନ୍ତି । ଜ୍ୟୋତିଷୀମାନଙ୍କ ଆସନ ନିକଟରେ ଲିପିକାର ବସି ସେମାନଙ୍କ ବକ୍ତବ୍ୟ ଲେଖି ଚାଲିଛନ୍ତି । ଅନୁମାନ, ଏହା ଭାରତୀୟ ଲିଖନକଳାର ପ୍ରାଚୀନତମ ଚିତ୍ରରୂପ ।

**Biswajit Das** : A monograph on Odia playwright by Upendra Prasad Nayak, Sahitya Akademi, New Delhi (2018) Rs. 50.

ସର୍ବସ୍ୱତ୍ୱ © ସାହିତ୍ୟ ଅକାଦେମି ୨୦୧୮

ସାହିତ୍ୟ ଅକାଦେମି ଦ୍ୱାରା ପ୍ରକାଶିତ

ବିଷୟ: ଜୀବନୀ

ପ୍ରଥମ ପ୍ରକାଶ: ୨୦୧୮

ISBN : 978-93-87989-54-2

Rs. 50



ସାହିତ୍ୟ ଅକାଦେମି
ମୁଖ୍ୟ କାର୍ଯ୍ୟାଳୟ : ରବୀନ୍ଦ୍ର ଭବନ, ୩୫, ଫିରୋଜ ସାହ ରୋଡ଼, ନୂଆ ଦିଲ୍ଲୀ ୧୧୦୦୦୧
secretary@sahitya-akademi.gov.in, ୦୧୧-୨୨୩୮୬୬୨୬/୨୭/୨୮
ବିକ୍ରୟ କେନ୍ଦ୍ର : 'ସ୍ୱାତୀ', ମନ୍ଦିର ମାର୍ଗ, ନୂଆ ଦିଲ୍ଲୀ ୧୧୦୦୦୧
sales@sahitya-akademi.gov.in, ୦୧୧-୨୩୭୪୫୨୯୭/୨୩୩୬୪୨୦୪
କୋଲକାତା: ୪, ଡି.ଏଲ୍.ଖାଁ ରୋଡ଼, କୋଲକାତା ୭୦୦୦୨୫
po.rok@sahitya-akademi.gov.in, ୦୩୩-୨୪୧୯୧୬୮୩/୨୪୧୯୧୭୦୬
ଚେନ୍ନାଇ: ଗୁଣ କମ୍ପ୍ଲେକ୍ସ, ମେନ୍ ବିଲ୍ଡିଂ, ୪୪୩(୩୦୪) ଆନ୍ନାସାଲ୍ଲାଇ, ଟେନାମପେଟ୍,
ଚେନ୍ନାଇ ୬୦୦୦୧୮
chennaioffice@sahitya-akademi.gov.in, ୦୪୪-୨୪୩୧୧୭୪୧
ମୁମ୍ବାଇ: ୧୭୨ ମୁମ୍ବାଇ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବଇ ୪୦୦୦୧୪
rs.rom@sahitya-akademi.gov.in, ୦୨୨-୨୨୪୧୩୫୭୪୪/୨୪୧୩୧୯୪୮
ବେଙ୍ଗାଲୁରୁ: ସେଣ୍ଟ୍ରାଲ କଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲଡିଂ, ଡଃ ଆମ୍ବେଦକର ଭିଧୀ, ବେଙ୍ଗାଲୁରୁ ୫୬୦୦୦୧
rs.rob@sahitya-akademi.gov.in, ୦୮୦-୨୨୨୪୫୧୫୨/୨୨୧୩୦୮୭୦

ଅକ୍ଷର ବିନ୍ୟାସ :
ଜୟଗୁରୁ ପ୍ରିଣ୍ଟର୍ସ ଏଣ୍ଡ ପବ୍ଲିଶର୍ସ, ୧୯୯. ବି.ବି.ଗାଙ୍ଗୁଲି ଷ୍ଟ୍ରୀଟ୍, କୋଲକାତା ୭୦୦୦୧୨

ମୁଦ୍ରଣ :
ଜୟଶ୍ରୀ ପ୍ରେସ୍, ୯୧/୧ବି, ବୈଠକଖାନା ରୋଡ଼, କୋଲକତା-୭୦୦୦୦୯

Website: http://www.sahitya-akademi.gov.in

# ଭୂମିକା

ବିଶ୍ୱଜିତ୍ ଦାସ ଓଡ଼ିଆ ନାଟ୍ୟ ସାହିତ୍ୟରେ ଏକ ସଶ୍ରଦ୍ଧ ଉଚ୍ଚାରଣ । ଓଡ଼ିଆ ନାଟ୍ୟ ରଚନା କ୍ଷେତ୍ରରେ ବହୁ ପରୀକ୍ଷା ନିରୀକ୍ଷା ପୂର୍ବକ ସେ ବୁହାଇ ଦେଇଯାଇଛନ୍ତି ଏକ ନୂତନ ଚିନ୍ତା ଚେତନାର ମାର୍ମିକ ପ୍ରବାହ । ତାଙ୍କ ରଚନାର ସ୍ୱର ଓ ସ୍ୱରୂପରେ ଯେଉଁ ନବନାଟ୍ୟ ଗୁଞ୍ଜନର ଧାରା ପ୍ରକଟିତ ହୋଇଛି, ତା'ର ତୁଳନା ନାହିଁ ।

ସେହି କୀର୍ତ୍ତିଧର ଯଶସ୍ୱୀ ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ସୃଷ୍ଟି ସମ୍ଭାର ଏବଂ ତାଙ୍କ ନାଟ୍ୟ ପ୍ରୟୋଗ ଧାରା ସମ୍ପର୍କରେ ରଚିତ ମୋର ଏହି ଗ୍ରନ୍ଥରେ ତାଙ୍କ ଜୀବନ ବୃତ୍ତାନ୍ତ ଠାରୁ ଆରମ୍ଭ କରି ତାଙ୍କ ନାଟ୍ୟକୃତି ଓ ନାଟ୍ୟରୀତିର ଆଲୋଚନା କରାଯାଇଛି ନିଛକ ପରିପାଟୀରେ ।

ଏହି ଗ୍ରନ୍ଥଟି ରଚନା କରିବା ନିମନ୍ତେ ସାହିତ୍ୟ ଅକାଦେମି ମୋତେ ଉତ୍ସାହିତ କରିଥିବାରୁ ଅକାଦେମିର ବରେଣ୍ୟ ସଭାପତି, ସଚିବ, ଓଡ଼ିଆ ଭାଷା ପରାମର୍ଶ ପରିଷଦର ଆବାହକ ଏବଂ ସର୍ବୋପରି ପ୍ରୋଗ୍ରାମ ଅଫିସର୍ ଡକ୍ଟର ମିହିର କୁମାର ସାହୁଙ୍କୁ କୃତଜ୍ଞତା ନ ଜଣାଇ ରହିପାରୁନି ।

ପୁସ୍ତକଟି ଯଥାରୀତିରେ ପ୍ରଚାରିତ ପ୍ରସାରିତ ହେବା ସହିତ ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେକରିବି ।

– ଉପେନ୍ଦ୍ର ପ୍ରସାଦ ନାୟକ

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ

# ଓଡ଼ିଆ ନବନାଟ୍ୟ ଆନ୍ଦୋଳନ ଓ ବିଶ୍ୱଜିତ୍ ଦାସ

ଓଡ଼ିଆ ନାଟକର ନିଶ୍ଚିତଭାବେ ଏକ ସମୁଜ୍ଜ୍ୱଳ ପରମ୍ପରା ରହିଛି । ଓଡ଼ିଆ ଲୋକନାଟ୍ୟର ଆବର୍ତ୍ତରୁ ମୁକୁଳି ସ୍ୱତନ୍ତ୍ର ପାରମ୍ପରିକତାକୁ ଯେତେବେଳେ ଆପଣେଇ ନେଇଛି ନାଟକ, ସେତେବେଳେ ସୃଷ୍ଟି ହୋଇଛି ପାରମ୍ପରିକ ନାଟକ । ଜଗମୋହନ ଲାଲାଙ୍କ 'ବାବାଜୀ' (୧୮୭୭) ନାଟକ ପ୍ରଥମ ଓଡ଼ିଆ ନାଟକର ମାନ୍ୟତା ଲାଭ କରୁଥିବାବେଳେ ରାମଶଙ୍କର ରାୟଙ୍କ କାଞ୍ଚିକାବେରୀ(୧୮୮୦) ସେହି ଆଦ୍ୟ ଅଧିବାସର ଶୁଭଲଗ୍ନରେ ସୃଷ୍ଟି ହୋଇଥିବାର ଇତିହାସକୁ କେହି ଅସ୍ୱୀକାର କରିପାରନ୍ତି ନାହିଁ । ଏହି ପର୍ଯ୍ୟାୟରେ ନାଟକର ଗତିପଥ ବେଶ୍ ଗତିଶୀଳ ହୋଇଥିଲେ ହେଁ ଶିକ୍ଷା, ସଭ୍ୟତା ଓ ସଂସ୍କୃତିର କ୍ରମବିକାଶ ଧାରାରେ କ୍ରମଶଃ ଓଡ଼ିଆ ନାଟକର ମଧ୍ୟ କେତେକ ଉତ୍ତରଣ ଘଟିଥିଲା । ବିଶେଷକରି ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳରେ ଦୁଇଜଣ ବିଶିଷ୍ଟ ନାଟ୍ୟକାର ଓଡ଼ିଆ ନାଟକର ଗତିପଥକୁ ସଂପୂର୍ଣ୍ଣଭାବେ ନିୟନ୍ତ୍ରଣ କରି ଓଡ଼ିଆ ନାଟକକୁ ଦେଇଥିଲେ ଏକ ମାର୍ଜିତ ଓ ପରିଚ୍ଛନ୍ନ ରୂପରେଖ । ସେ ଦୁହେଁ ପ୍ରଥମତଃ ନାଟକରୁ ବହୁଳ ସଂଗୀତ ମାତ୍ରାକୁ ହ୍ରାସ କରି ରୁଚିଶୀଳ ଆଧୁନିକ ଗଦ୍ୟ ସଂଳାପ ସଂଯୋଜନା ପୂର୍ବକ ଓଡ଼ିଆ ନାଟକର ଉତ୍ତରଣ ଘଟାଇଥିଲେ । ସେ ଦୁଇଜଣ ବିଶିଷ୍ଟ ନାଟ୍ୟକାର ହେଲେ ନାଟ୍ୟଭାରତୀ ଅଶ୍ୱିନୀ କୁମାର ଘୋଷ ଓ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ଅଶ୍ୱିନୀ କୁମାର ବହୁ ପୌରାଣିକ, ଐତିହାସିକ ଓ ସାମାଜିକ ନାଟକ ରଚନା କରି ଓଡ଼ିଆ ନାଟ୍ୟ ସାହିତ୍ୟକୁ ବହୁ ଭାବରେ ସମୃଦ୍ଧ କରିଥିଲେ ହେଁ କବିଚନ୍ଦ୍ର କାଳୀଚରଣ ଓଡ଼ିଆ ନାଟକ ଓ ଓଡ଼ିଆ ରଙ୍ଗମଞ୍ଚ ନିମନ୍ତେ ଏକ ବଳିଷ୍ଠ ଭିତ୍ତିଭୂମି ପ୍ରସ୍ତୁତ କରିପାରିଥିଲେ । ଓଡ଼ିଶାର ଅନ୍ୟତମ ପ୍ରାଚୀନ ସାଂସ୍କୃତିକ ନଗରୀ କଟକ ସହରରେ ନିଜେ 'ଓଡ଼ିଶା ଥିଏଟର୍ସ' ପ୍ରତିଷ୍ଠା କରି ତହିଁରେ ନିଜ ରଚିତ ନୂତନ ପରିପାଟୀର ନାଟକମାନ ମଞ୍ଚସ୍ଥକରି ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିବାକୁ ସମର୍ଥ ହୋଇ ପାରିଥିଲେ । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଥିଲେ ଯେପରି ଜଣେ ପ୍ରଭାବଶାଳୀ, ବଳିଷ୍ଠ ନାଟ୍ୟକାର, ସେହିପରି ଜଣେ

କୁଶଳୀ ନାଟ୍ୟ ନିର୍ଦ୍ଦେଶକ, ସେହିପରି ଜଣେ ବିଶିଷ୍ଟ ସଂଗୀତଜ୍ଞ ଓ ଗୀତିକାର । ମଞ୍ଚ ପ୍ରୟୋଗର ଅନନ୍ୟ ପ୍ରତିଭାରେ ସେ ଥିଲେ ଏକ ଅଗ୍ରଗଣ୍ୟ ମହାରଥୀ । ନାଟକରେ ନାରୀ ଚରିତ୍ରରେ ଅଭିନେତ୍ରୀମାନଙ୍କର ପ୍ରଥମ ସମାବେଶ ଥିଲା ତାଙ୍କ ନାଟ୍ୟକର୍ମର ଅନ୍ୟତମ ସ୍ୱତନ୍ତ୍ର ଅବଦାନ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ଜନମାନସକୁ ଶଙ୍କାଗ୍ରସ୍ତ କରିଥିବାବେଳେ ପରାଧୀନ ଭାରତବାସୀଙ୍କ ମନରେ ନବଚେତନାର ଉଦ୍‌ଗୀରଣ ନିମନ୍ତେ ତାଙ୍କ ନାଟ୍ୟ ମାନସ ସଦା ତତ୍ପର ଥିଲା ନିଶ୍ଚୟ । ନାଟ୍ୟକାର କାଳୀଚରଣ ଓଡ଼ିଆ ନାଟକକୁ ମାର୍ଜିତ ରୂପଦାନ କରି ଯଥେଷ୍ଟ ରୁଚିଶୀଳ ତଥା ବିକାଶୋନ୍ମୁଖୀ କରାଉଥିବାବେଳେ ଭାରତ ସ୍ୱାଧୀନତା ଲାଭକଲା । ସ୍ୱାଧୀନତା ପରେ ଏ ଦେଶର ଜନତା ବ୍ରିଟିଶ କବଳରୁ ମୁକ୍ତିଲାଭ କରିଥିଲେ ମଧ୍ୟ ନିଜର ଜୀବନ ଜୀବିକା କ୍ଷେତ୍ରରେ ବହୁ ସମସ୍ୟାର ସମ୍ମୁଖୀନ ହେବାକୁ ବାଧ୍ୟ ହୋଇଥିଲେ । ତେଣୁ କାଳୀଚରଣଙ୍କ ଆଦର୍ଶକୁ ଗ୍ରହଣ କରୁଥିବା କେତେକ ବିଚକ୍ଷଣ ନାଟ୍ୟ ବିନ୍ଧାଣୀ ତାଙ୍କ ସହ ତାଳଦେଇ ସମାଜର ନାନାଦି ସଙ୍କଟ ଓ ସମ୍ଭାବନାକୁ ଭିତ୍ତିକରି ବେଶ୍ ଉନ୍ନତ ଭାବାପନ୍ନ ନାଟକମାନ ରଚନା କରି ସାଫଲ୍ୟ ଅର୍ଜନ କରିବାକୁ ଲାଗିଲେ । ସେହି ନାଟ୍ୟକାରମାନଙ୍କ ମଧ୍ୟରେ ସର୍ବଶ୍ରୀ ରାମଚନ୍ଦ୍ର ମିଶ୍ର, ଭଞ୍ଜ କିଶୋର ପଟ୍ଟନାୟକ, ଗୋପାଳ ଛୋଟରାୟ, କମଳ ଲୋଚନ ମହାନ୍ତି, ଆନନ୍ଦ ଶଙ୍କର ଦାସ ଆଦି ପ୍ରଧାନ ।

ସ୍ୱାଧୀନତା ପରେ ରାଜତନ୍ତ୍ରର ଉଚ୍ଛେଦ ସାଙ୍ଗକୁ ସମାଜରେ ମୁଣ୍ଡ ଟେକୁଥିବା ସାଂସ୍କୃତିକ ଅବକ୍ଷୟ, ଗଣତନ୍ତ୍ର ବିରୋଧୀ କାର୍ଯ୍ୟାନୁଷ୍ଠାନ, ସରକାରୀ ପଦାଧିକାରୀଙ୍କ ଅନ୍ୟାୟ, ଅତ୍ୟାଚାର, ମନ୍ତ୍ରୀ -ନେତାଙ୍କ ଦୁର୍ନୀତି ଓ ଭ୍ରଷ୍ଟାଚାର, ପୋଲିସ୍‌ର ଲାଞ୍ଚଖୋର ମନମୁଖୀ କାର୍ଯ୍ୟ, ଧର୍ଷଣ, ଡକାୟତି, ପ୍ରେମରେ ପ୍ରତାରଣା ଆଦି ସମସ୍ୟାଗୁଡ଼ିକର ନିଛକ ଚିତ୍ର ଓଡ଼ିଆ ନାଟକରେ ଚିତ୍ରିତ ହେବା ସଙ୍ଗେସଙ୍ଗେ ସେସବୁ ସମସ୍ୟାର ସମାଧାନ ବା ସମ୍ଭାବନାର ସ୍ୱର ଅନୁରଣିତ ହେଲା । ନାଟ୍ୟକାରର ଦିଗ୍‌ଦର୍ଶନ କେତେମାତ୍ରାରେ ଜନଗଣଙ୍କୁ ସ୍ପର୍ଶକଲା, କେତେ ପରିମାଣରେ ତା'ର ନିରାକରଣ ସଂଗଠିତ ହେଲା, ସ୍ପଷ୍ଟଭାବେ ତା'ର ନିର୍ଦ୍ଦିଷ୍ଟ କଳନା କରିବାର ଅବ୍ୟବହିତ ପୂର୍ବରୁ ଓଡ଼ିଆ ନାଟ୍ୟଧାରାର ପରିବର୍ତ୍ତନ ପରିଲକ୍ଷିତ ହେଲା । ତା'ଫଳରେ ନାଟ୍ୟକାରମାନେ ନୂତନ ଚିନ୍ତାଚେତନାରେ ଅନୁଗାମୀ ହୋଇ ନାନାଦି ପରୀକ୍ଷା ନିରୀକ୍ଷା ମାଧ୍ୟମରେ ବୌଦ୍ଧିକ କସ୍‌ରତ୍ କରିବାରେ ତତ୍ପର ହୋଇ ଉଠିଲେ । ଆକର୍ଷଣୀୟ କଥାବସ୍ତୁ, ଯଥାର୍ଥ ରସଚର୍ଯ୍ୟା, ବଳିଷ୍ଠ ସଂଘାତ ସମାବେଶ ଓ ତଥାକଥିତ ସଂଳାପ ସଂଯୋଜନାକୁ ପଛକରି ନାଟ୍ୟକାରମାନେ ନାଟକରେ ଖଣ୍ଡିତ ସଂଳାପ, ପରୋକ୍ଷ ସଂଘାତ, ସଂଗୀତ ବିହୀନ ନାଟକ ମାଧ୍ୟମରେ ନବନାଟ୍ୟ ଧାରାର ଶଗଡ଼ ଗୁଳା ତିଆରି କରିବାକୁ ଆଗେଇ ଆସିଥିଲେ । ଫଳରେ ପାରମ୍ପରିକ ମଞ୍ଚସଜ୍ଜା ଛାଡ଼ି ନୂତନ ମଞ୍ଚର ନବୀକରଣ ମଧ୍ୟରେ ନାଟକର ପ୍ରୟୋଗ ଆରମ୍ଭ ହେଲା ।

ଠିକ୍ ସେତିକିବେଳକୁ ଓଡ଼ିଶାରେ ବ୍ୟବସାୟିକ ରଙ୍ଗମଞ୍ଚ ଗୁଡ଼ିକର ପାଦ ପ୍ରଦୀପ ବିଲୀନ ହେବାକୁ ଲାଗିଲା । ଆର୍ଥିକ ସଂକଟ ଏବଂ ନାଟ୍ୟକର୍ମୀମାନଙ୍କର ଜୀବନ ଜୀବିକାର ଅଭାବନୀୟ ପରିସ୍ଥିତି ଓଡ଼ିଆ ମଞ୍ଚନାଟକର ଗତିପଥରେ ଘୋର ଅନ୍ତରାୟ ସୃଷ୍ଟି କଲା । ଓଡ଼ିଶା ଥିଏଟର୍ସ, ତା'ପରେ ଅନ୍ନପୂର୍ଣ୍ଣା 'ବି'ଗ୍ରୁପ୍, ଅନ୍ନପୂର୍ଣ୍ଣା-ଏ ଗ୍ରୁପ୍, ଜନତା ରଙ୍ଗମଞ୍ଚ, କଳାଶ୍ରୀ ରଙ୍ଗମଞ୍ଚ ଓ ଏକାମ୍ର ରଙ୍ଗମଞ୍ଚ ଆଦି ବ୍ୟବସାୟିକ ରଙ୍ଗମଞ୍ଚ ଗୁଡ଼ିକ ବନ୍ଦ ହୋଇଯିବା ପରେ ନୂଆ ରୂପରେଖ ନେଇ ଓଡ଼ିଶାରେ କେତେକ ଅଙ୍ଗୀକାରବଦ୍ଧ ସୌଖିନ୍ ନାଟ୍ୟାନୁଷ୍ଠାନ ଗଢ଼ି ଉଠିଲା । ଏହିସବୁ ସୌଖିନ୍ ନାଟ୍ୟାନୁଷ୍ଠାନର ପଶ୍ଚାତ୍‌ରେ ବହୁ ଉଦୀୟମାନ ନାଟ୍ୟକାର, ଅଭିନେତା, ଅଭିନେତ୍ରୀ, ନାଟ୍ୟ ନିର୍ଦ୍ଦେଶକ ରହି ଏହାକୁ ନୂଆରୂପରେ ଗଢ଼ିବାକୁ ଯତ୍ନବାନ୍ ହୋଇ ଉଠିଥିଲେ । ନାଟ୍ୟ ପ୍ରୟୋଗ କ୍ଷେତ୍ରରେ ମଧ୍ୟ ବହୁ ପରିବର୍ତ୍ତନର ସୂତ୍ରପାତ ହେବାକୁ ଲାଗିଲା । ନାଟକର ସମୟସୀମା ହ୍ରାସ ହେବାକୁ ଲାଗିଲା । ବ୍ୟବସାୟିକ ରଙ୍ଗମଞ୍ଚରେ ଯେଉଁସବୁ ପାରମ୍ପରିକ ନାଟକମାନ ପରିବେଷିତ ହେଉଥିଲା, ସେ ସବୁ ନାଟକ ଲେଖା ଛାଡ଼ି ନୂଆ ଢଙ୍ଗରେ, ନୂତନ ରୀତିରେ ନାଟକ ଲେଖି ସୌଖିନ୍ ନାଟ୍ୟସଂସ୍ଥା ମାଧ୍ୟମରେ ତାହାକୁ ପରିବେଷଣ କରି ନାଟକର ନୂତନ ଧାରା ସୃଷ୍ଟି କରିବାକୁ ନାଟ୍ୟକାର ଓ ନାଟ୍ୟକର୍ମୀମାନେ ଅଣ୍ଟାଭିଡ଼ି ଆଗେଇ ଆସିଲେ । ସେତେବେଳକୁ ବଙ୍ଗଳାରେ ନବନାଟ୍ୟ ଆନ୍ଦୋଳନର ଧାରା ମୁଣ୍ଡ ଟେକି ସାରିଥିଲା । ବିଜନ୍ ଭଟ୍ଟାଚାର୍ଯ୍ୟ, ବାଦଲ ସରକାର, ଉତ୍ପଳ ଦତ୍ତ, ରୁଦ୍ର ସେନ୍‌ଗୁପ୍ତ, ମନୋଜ ମିତ୍ର ଆଦି ନାଟ୍ୟକାର ଓ ନାଟ୍ୟକର୍ମୀମାନେ ବଙ୍ଗଳା ନାଟକରେ କେତେକ ଶୈଳୀ ଓ ପ୍ରୟୋଗରେ ନୂତନତା ଆଣି କେତେପାଦ ଆଗେଇଯିବାର ଜଣା ଯାଉଥିଲା । ଓଡ଼ିଶାରେ ସେହିପରି ଏହି ନୂତନ ନାଟ୍ୟଧାରା ସୃଷ୍ଟି କରି ଦର୍ଶକଙ୍କ ନିକଟରେ ଏକ ନୂଆ ଦୃଶ୍ୟ, ନୂଆ ଚିତ୍ରର ଭେଳିକି ପ୍ରତିଭାତ କରାଗଲା, ଯାହାକି ସାଧାରଣ ଦର୍ଶକଙ୍କ ଠାରୁ ଏହା ଦୂରେଇ ରହିଥିଲେ ମଧ୍ୟ ଏପ୍ରକାର ବୌଦ୍ଧିକ କସରତ୍ କେତେକ ବୁଦ୍ଧିଜୀବି ତଥା ପାଶ୍ଚାତ୍ୟ ସଭ୍ୟତା ପ୍ରେମୀ ଦର୍ଶକଙ୍କ ଦ୍ୱାରା ପ୍ରଶଂସା ଲାଭ କଲା । ନାଟ୍ୟ ସମାଲୋଚକମାନେ ମଧ୍ୟ ଏହି ଧାରାର ନାଟକକୁ କେତେକାଂଶରେ ପ୍ରୋତ୍ସାହନ ଦେଲେ । ଫଳରେ ଆଧୁନିକ ନାଟ୍ୟକାରମାନେ 'ନବନାଟ୍ୟ ଆନ୍ଦୋଳନ' ନାଆଁରେ ଏହି ନୂତନ ଧାରାର ନାଟକ ରଚନା କରି ମଞ୍ଚସ୍ଥ କରାଇ ଏକ ମାର୍ଜିତ ନାଟ୍ୟ ପରିବେଶ ଓ ବାତାବରଣ ସୃଷ୍ଟି କରିବାକୁ ଉଦ୍ୟମ ଅବ୍ୟାହତ ରଖିଲେ । ନାଟକରେ ଆଙ୍ଗିକର ପରିବର୍ତ୍ତନ ଫଳରେ ସାମଗ୍ରିକ ଭାବରେ ଓଡ଼ିଆ ନାଟ୍ୟ ଚେତନାର ଅଭୂତପୂର୍ବ ପରିବର୍ତ୍ତନର ସୂଚନା ଅନୁଭୂତ ହେଲା ।

ବ୍ୟବସାୟିକ ରଙ୍ଗମଞ୍ଚ ଗୁଡ଼ିକର ବିଲୟ ସାଙ୍ଗକୁ ଏପ୍ରକାର ନାଟକ ସୌଖିନ୍ ରଙ୍ଗମଞ୍ଚରେ ପରିବେଷିତ ହେବାକୁ ଲାଗିଲା । ଏହି ନବନାଟ୍ୟ ଧାରାର ମୁଖ୍ୟ ପୁରୋଧା ଥିଲେ

ନାଟ୍ୟକାର ମନୋରଂଜନ ଦାସ । ସେ ବହୁ ପରୀକ୍ଷାଧର୍ମୀ ନାଟକ ରଚନା କରି ନବନାଟ୍ୟ ଆନ୍ଦୋଳନର ଗତିପଥକୁ ଚତିଶୀଳ କରି ରଖିଥିଲେ । ତାଙ୍କ ରଚିତ ମନସ୍ତାତ୍ତ୍ୱିକ ନାଟକ 'ଆଗାମୀ' ପାଠକ / ଦର୍ଶକ ମନରେ ଏକ ଭିନ୍ନ ଚେତନା ସୃଷ୍ଟି କରିଥିବାବେଳେ ପରବର୍ତ୍ତୀ ସମୟରେ ତାଙ୍କ ରଚିତ ନାଟକ 'ବନହଂସୀ', 'ଅମୃତସ୍ୟପୁତ୍ର', 'ଅରଣ୍ୟ ଫସଲ', 'ବିତର୍କିତ ଅପରାହ୍ନ' ଓ 'କ୍ଲାନ୍ତ ପ୍ରଜାପତି' ଆଦି ନାଟକ ନାଟ୍ୟ ସମାଲୋଚକମାନଙ୍କ ଦ୍ୱାରା ଉଦ୍ଭଟ ନାଟକ ବୋଲି ଗୃହୀତ ନହେଲେ ମଧ୍ୟ ଏହାର ରଚନାରେ ନୂତନତା ତଥା ପ୍ରୟୋଗରେ ନୂତନତା ନବନାଟ୍ୟ ଆନ୍ଦୋଳନ ପ୍ରସୂତ ନାଟକ ବୋଲି ସ୍ୱୀକାର କରୁଥିଲେ । ମନୋରଂଜନ ଦାସଙ୍କ ବ୍ୟତୀତ ନାଟ୍ୟକାର ବିଜୟ ମିଶ୍ର, ବିଶ୍ୱଜିତ୍ ଦାସ, ରମେଶ ପ୍ରସାଦ ପାଣିଗ୍ରହୀ, ରତ୍ନାକର ଚଇନି, ସୁରେନ୍ ମହାନ୍ତି, କାର୍ତ୍ତିକ ଚନ୍ଦ୍ର ରଥ, ହରିହର ମିଶ୍ର ଆଦି ନାଟ୍ୟକାରମାନେ ମଧ୍ୟ ନବନାଟ୍ୟ ଆନ୍ଦୋଳନ ଧାରାରେ ଅନ୍ୟତମ ନାଟ୍ୟରଥୀ ଭାବେ ଅଣ୍ଟାଭିଡ଼ି ବାହାରିଥିଲେ ।

ଏହି ପର୍ଯ୍ୟାୟରେ ଏହି ନାଟ୍ୟକାରମାନଙ୍କର ରଚନା ପାରମ୍ପରିକତାଠାରୁ ଦୂରରେ ରହି ନବନାଟ୍ୟ ଧାରାରେ ଗଠିତ ହୋଇଥିଲେ ମଧ୍ୟ ପାଠକ / ଦର୍ଶକମାନଙ୍କ ଠାରୁ ସର୍ବତୋଭାବେ ଦୂରେଇ ଯାଇ ନ ଥିଲା ବରଂ ଦର୍ଶକଙ୍କ ମନରେ ଏକ ସ୍ୱତନ୍ତ୍ର ଆଲୋଡ଼ନ ସୃଷ୍ଟି କରିବାକୁ ସକ୍ଷମ ହୋଇ ପାରିଥିଲା । ବିଜୟ ମିଶ୍ରଙ୍କ 'ଶବ ବାହକମାନେ', 'ଏଠି ସେଠି ସବୁଠି' ଓ 'ଚନ୍ଦ୍ରଚୋରୀ' ଆଦି ନାଟକରେ ନୂତନତା ତାଙ୍କ ତଥାକଥିତ ନାଟକଠାରୁ ବାରି ହୋଇପଡ଼େ । ସେହିପରି ଭାବରେ ବ୍ୟୋମକେଶ ତ୍ରିପାଠୀଙ୍କ 'ଏକ ଦୁଇ ତିନ୍', ପ୍ରାଣବନ୍ଧୁ କରଙ୍କ 'ଅଶାନ୍ତ' ଓ 'ଶ୍ୱେତପଦ୍ମା', ସୁରେନ୍ ମହାନ୍ତିଙ୍କ 'ବେଗମ୍ କୋଠି', ଯଦୁନାଥ ଦାସ ମହାପାତ୍ରଙ୍କ 'ଅଥବା ଅନ୍ଧାର' ରତ୍ନାକାର ଚଇନିଙ୍କ 'ରାଜହଂସ', 'ଅଥଚ ଚାଣକ୍ୟ', ରମେଶ ପ୍ରସାଦ ପାଣିଗ୍ରାହୀଙ୍କ 'ମୁଁ ଆମ୍ଭେ ଓ ଆମ୍ଭେମାନେ', କାର୍ତ୍ତିକ ଚନ୍ଦ୍ର ରଥଙ୍କ 'ସ୍ୱର୍ଗଦ୍ୱାର', 'ମଶାଣିର ଫୁଲ', ପ୍ରଫୁଲ୍ଲ କୁମାର ରଥଙ୍କ 'ଶବ ପଡ଼ିଛି', ହରିହର ମିଶ୍ରଙ୍କ 'ରାତ୍ରିର ଦୁଇଟି ଡେଣା' ଆଦି ଅନେକ ନାଟକ ଏହି କାଳରେ ରଚିତ ଓ ନୂତନ ପ୍ରୟୋଗ ଧାରାରେ ପରିବେଷିତ ହୋଇଥିଲା । ୧୯୬୦ ମସିହାଠାରୁ ଆରମ୍ଭ କରି ୧୯୭୭-୭୮ ମସିହା ପର୍ଯ୍ୟନ୍ତ ଏହି ନବନାଟ୍ୟ ଆନ୍ଦୋଳନ ପ୍ରସୂତ ବହୁ ପରୀକ୍ଷାଧର୍ମୀ ନାଟକ ଆତ୍ମଲାଭ କରି ଓଡ଼ିଆ ନାଟ୍ୟଭଣ୍ଡାରକୁ ସମୃଦ୍ଧ କରିପାରିଥିଲା ।

ପରବର୍ତ୍ତୀ ସମୟରେ ଅବଶ୍ୟ ବହୁ ନାଟ୍ୟକାର ଠିକ୍ ସେହି ଧାରାରେ ନହେଲେ ବି ନାଟକର ନୂତନ ଆଙ୍ଗିକ ସହିତ ନୂତନ ଚିନ୍ତା ଚେତନା ଭିତରେ ଲୋକ ଉପାଦାନର ଆଂଶିକ ଭାବ ସଂଯୋଗରେ ବହୁ ନାଟକ ରଚନା କରି ଯଥେଷ୍ଟ ସଫଳତା ଅର୍ଜନ କରିପାରିଥିଲେ । ସେହି କ୍ରମରେ ସର୍ବଶ୍ରୀ ରତି ରଂଜନ ମିଶ୍ର, ଦିଲ୍ଲୀଶ୍ୱର ମହାରଣା, ପ୍ରମୋଦ

ତ୍ରିପାଠୀ, ରଣଜିତ୍ ପଟ୍ଟନାୟକ ଓ ଶଙ୍କର ତ୍ରିପାଠୀ ଆଦି ବହୁ ନାଟ୍ୟକାରଙ୍କ ଅବଦାନକୁ ସ୍ୱୀକାର କରାଯାଇ ପାରେ ।

ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ସମୃଦ୍ଧି ଦିଗରେ ସୌଖୀନ୍ ଅଙ୍ଗୀକାରବଦ୍ଧ ନାଟ୍ୟସଂସ୍ଥାମାନଙ୍କର ଅବଦାନକୁ ଅସ୍ୱୀକାର କରାଯାଇ ନ ପାରେ । ଓଡ଼ିଶାରେ ବ୍ୟବସାୟିକ ରଙ୍ଗମଞ୍ଚର ପାଦପ୍ରଦୀପ ବିଲୀନ ହୋଇଯିବା ପରେ ଓଡ଼ିଆ ମଞ୍ଚନାଟକ କ୍ଷେତ୍ରରେ ଯେଉଁ ଘୋର ଦୁର୍ଦ୍ଦିନ ଉପନୀତ ହୋଇଥିଲା, ତାକୁ ରକ୍ଷା କରିବା ଦିଗରେ ଏହି ସୌଖୀନ୍ ନାଟ୍ୟସଂସ୍ଥାମାନେ ଯେ କେବଳ ରକ୍ଷାକବଚ ଭାବେ ଦଣ୍ଡାୟମାନ ହୋଇଥିଲେ, ଏଥିରେ ସନ୍ଦେହ ନାହିଁ । ଏହି ନବନାଟ୍ୟ ଆନ୍ଦୋଳନର ଆଦ୍ୟ ଲଗ୍ନରେ କଟକର 'ସୃଜନୀ', 'ଫ୍ରେଣ୍ଡସ୍ କ୍ଲବ୍' ଆଦି ନାଟ୍ୟ ସଂସ୍ଥା ଯଥେଷ୍ଟ କାର୍ଯ୍ୟ କରିଥିବାବେଳେ ଭୁବନେଶ୍ୱରର 'ରୂପକାର', 'ସଂକେତ', 'ୟୁନାଇଟେଡ୍ ଆର୍ଟିଷ୍ଟ୍' ଓ ପରବର୍ତ୍ତୀ ସମୟରେ 'ଶତାବ୍ଦୀର କଳାକାର', 'ମନନ', 'ଉତ୍ତର ପୁରୁଷ, 'ଏବଂ ଆମେ', 'ଆରୋହଣ', 'ଶିଳାଶ୍ରୀ', 'କ୍ୟାପିଟାଲ୍ ଥିଏଟର୍ସ', 'ପଞ୍ଚମ ବେଦ' ଓ 'ଅଭିନୟ', ରାଉରକେଲାର 'ସଂକଳ୍ପ', 'ସଂପର୍କ', 'ରଙ୍ଗମଞ୍ଚ', 'ସ୍ୱସ୍ତି ଝଙ୍କାର', 'ରାଉରକେଲା କଲ୍‌ଚରାଲ ଏକାଡେମୀ', ବାଲେଶ୍ୱରର 'ସ୍ରଷ୍ଟା', 'ବିନ୍ଦୁବଳୟ', ସମ୍ବଲପୁରର 'କଖଗ', ଢେଙ୍କାନାଳର 'ଆମେ କଳାକାର', ବ୍ରହ୍ମପୁରର 'ଗଞ୍ଜାମ କଳା ପରିଷଦ', ଜଟଣୀର 'ଉତ୍ତରାୟଣୀ କ୍ଲବ' ଓ 'ସଂଗୀତା', ଭଦ୍ରକର 'ଚକାଡ଼ୋଳା' ଓ 'ଶିଳ୍ପଶ୍ରୀ' ଆଦି ନାଟ୍ୟ ସଂସ୍ଥାମାନଙ୍କ ଭୂମିକା ଅନୁପେକ୍ଷଣୀୟ । ଏହିସବୁ ସଂସ୍ଥା ଭିନ୍ନ ଭିନ୍ନ ନାଟକ ପରିବେଷଣ କରିବା ସଙ୍ଗେ ସଙ୍ଗେ ନାଟ୍ୟୋତ୍ସବ ଓ ନାଟକ ପ୍ରତିଯୋଗିତାମାନ କରି ଓଡ଼ିଆ ନାଟ୍ୟକଳାକୁ ବହୁ ଭାବରେ ସମୃଦ୍ଧ କରିଅଛନ୍ତି ।

ନାଟ୍ୟକାର ବିଶ୍ୱଜିତ୍ ଏହି ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା । ସେ ପ୍ରଥମେ 'ରୂପକାର' ନାଟ୍ୟସଂସ୍ଥା ମାଧ୍ୟମରେ ତାଙ୍କର ବହୁ ନାଟକ ପରିବେଷଣ କରିଅଛନ୍ତି । ପରବର୍ତ୍ତୀ ଅବସ୍ଥାରେ ନିଜେ 'ସଂକେତ' ନାମରେ ଏକ ନାଟ୍ୟସଂସ୍ଥା ଗଠନ କରି ତହିଁରେ ନିଜ ରଚିତ ନାଟକମାନ ନିଜ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରାଇ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଅଛନ୍ତି । ନବନାଟ୍ୟ ଆନ୍ଦୋଳନ ନିମନ୍ତେ ବିଶ୍ୱଜିତ୍ ଦାସଙ୍କର ସ୍ୱତନ୍ତ୍ର ଅବଦାନକୁ ଅସ୍ୱୀକାର କରି ହେବ ନାହିଁ । ନିଜ ରଚିତ ନାଟକ ଗୁଡ଼ିକୁ ନୂତନ ଶୈଳୀରେ, ନୂତନ ପ୍ରୟୋଗ ଧାରାରେ ସମୃଦ୍ଧ କରି ସେ ମାର୍ଜିତ ରୁଚିରେ ନାଟକ ପରିବେଷଣ କରିଯାଇଛନ୍ତି । ସେଥି ନିମନ୍ତେ ସେ ଯେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ, ଏଥିରେ ସନ୍ଦେହ ନାହିଁ । ଏହି ପର୍ଯ୍ୟାୟରେ ବିଶ୍ୱଜିତ୍ ଦାସଙ୍କ 'ପ୍ରତାପଗଡ଼ରେ ଦିଦିନ' ଠାରୁ 'ମୃଗୟା', 'ନିଶିପଦ୍ମ', 'ନାଲିପାନ ରାଣୀ କଳାପାନ ଟୀକା' ଆଦି ବହୁ ନାଟକ ତାଙ୍କ ପ୍ରତିଭାର ପରିଚୟ ପ୍ରଦାନ କରେ ।

ବିଶ୍ୱଜିତ୍ ଦାସଙ୍କର ମୌଳିକ ନାଟକ ବ୍ୟତୀତ ଆଉ କେତେକ ନାଟକ ସେ ପାଶ୍ଚାତ୍ୟ ରଚନା ଛାୟାରେ ମଧ୍ୟ ରଚନା କରିଛନ୍ତି, ଯାହାକି ତାହା କେବଳ ତାଙ୍କୁ ସଫଳତା ଓ ଲୋକପ୍ରିୟତା ଦେଇନାହିଁ, ପରନ୍ତୁ ସେହି ନାଟକ ଗୁଡ଼ିକ ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିବାରେ ମଧ୍ୟ ସମର୍ଥ ହୋଇପାରିଛି ।

ଏହି ଓଡ଼ିଆ ନବନାଟ୍ୟ ଧାରା ପରିପ୍ରେକ୍ଷୀରେ ବିଶ୍ୱଜିତ୍ ଦାସଙ୍କର ଆଉ ଏକ ବିଶିଷ୍ଟ ଅବଦାନ ହେଲା ସେ ବିଭିନ୍ନ ସ୍କୁଲ, କଲେଜ ଆଦି ଶିକ୍ଷାନୁଷ୍ଠାନ ନିମନ୍ତେ ନୂତନ ପରିପାଟୀର ଏକାଙ୍କିକା ଓ ଛୋଟ ନାଟକ ରଚନା କରିଥିଲେ ଏବଂ ସେଗୁଡ଼ିକ ବିଭିନ୍ନ ଶିକ୍ଷାନୁଷ୍ଠାନ ମାନଙ୍କରେ ପରିବେଷିତ ହୋଇ ତାଙ୍କୁ ଅଶେଷ ଲୋକପ୍ରିୟତା ଦେଇଥିଲା । ନାଟ୍ୟକାର ପ୍ରାଣବନ୍ଧୁ କର ମଧ୍ୟ ଏହିପରି ବହୁ ଛୋଟ ନାଟକ ସ୍କୁଲ, କଲେଜ ତଥା ଅନ୍ୟାନ୍ୟ ସୌଖୀନ୍ ନାଟ୍ୟସଂସ୍ଥା ନିମନ୍ତେ ରଚନା କରି ସଫଳ ହୋଇଥିଲେ ।

ଓଡ଼ିଶାରେ ନବନାଟ୍ୟ ଆନ୍ଦୋଳନ ନାମରେ ଯେଉଁ ନବନାଟ୍ୟ ଧାରାଟି ଗଢ଼ି ଉଠିଥିଲା ତାହାକୁ କେତେକ ନାଟ୍ୟ ସମାଲୋଚକ ପ୍ରକୃତ ନବନାଟ୍ୟ ଆନ୍ଦୋଳନ ଭାବେ ଗ୍ରହଣ ନ କରିଥିଲେ ମଧ୍ୟ - ତତ୍କାଳୀନ ନାଟକଗୁଡ଼ିକ ଯେ ପାରମ୍ପରିକ ଓଡ଼ିଆ ନାଟକଠାରୁ ସଂପୂର୍ଣ୍ଣ ଭିନ୍ନ ପରିପାଟୀର ଏଥିରେ ସନ୍ଦେହ ନାହିଁ । ସେ ପ୍ରକାର ନାଟକ ରଚନା କରି ସେହି ତଥାକଥିତ ନାଟ୍ୟକାରମାନେ ଓଡ଼ିଆ ନାଟକକୁ ଅନ୍ୟାନ୍ୟ ଭାଷାର ନାଟକ ସହିତ ସମକକ୍ଷ କରାଇବାରେ ସମର୍ଥ ହୋଇଛନ୍ତି ବୋଲି କହିବାରେ ବାଧା ନାହିଁ ।

## ଦ୍ୱିତୀୟ ଅଧ୍ୟାୟ

# ବିଶ୍ୱଜିତ୍ ଦାସଙ୍କ ଜୀବନ ଚରିତ

ମଣିଷର ଜନ୍ମ, ଜୀବନ ଓ ମୃତ୍ୟୁ କଥା ଭାବିଲେ ବିସ୍ମୟ ଜାତ ହୁଏ । କାହାର ସ୍ଥିତିକାଳ କେତେ କଳନା କରିହୁଏ ନାହିଁ । ତଥାପି ମଣିଷ ତା'ର ଜୀବନକାଳ ମଧ୍ୟରେ ଯଦି କିଛି ସମାଜ ମଙ୍ଗଳ କାର୍ଯ୍ୟ କରିପାରେ, ତେବେ ସେ ମରି ବି ଅମର ହୋଇ ରହେ । ଜନଗଣଙ୍କ ନିକଟରେ ଚିରକାଳ ସ୍ମରଣୀୟ ହୋଇ ରହେ ତା'ର ବ୍ୟକ୍ତିସତ୍ତା । ମଣିଷ ନିଜର କର୍ମ ମାଧ୍ୟମରେ ସାମାଜିକ ସ୍ୱୀକୃତି ଲାଭ କରିପାରେ । ଦେଶ, ଜାତି ଓ ସର୍ବୋପରି ଜନସାଧାରଣଙ୍କ କଲ୍ୟାଣ ନିମନ୍ତେ ଯେ ନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ କାର୍ଯ୍ୟକରେ ସେ ଏକ ବରପୁତ୍ରଭାବେ ସମାଜରେ ପରିଗଣିତ ହୋଇପାରେ । ତା'ର ଜୀବନ କାହାଣୀ ଅନ୍ୟମାନଙ୍କ ପାଇଁ ଆଦର୍ଶ ପାଲଟି ଯାଏ । ସେହି ବରପୁତ୍ରମାନଙ୍କ ଜନ୍ମ, ଜୀବନ ଓ କର୍ମକୁ ଇତିହାସ ଲେଖିରଖେ ନିଜର ସ୍ୱର୍ଣ୍ଣାଭ ବକ୍ଷ ଫଳକରେ । ତେଣୁ ସେହି ଯୁଗଜନ୍ମା, ଯୋଗଜନ୍ମା, ପ୍ରତିଭାଧରମାନଙ୍କ ଜୀବନ କାହାଣୀ ଜୀବନୀ ସାହିତ୍ୟରେ ରୂପାୟିତ ହୋଇଯାଏ ଏବଂ ସେହି ଜୀବନୀ ମାଧ୍ୟମରେ ତା'ର କର୍ମ, ସାଧନା ଓ ଆଦର୍ଶକୁ ଉପଲବ୍ଧି କରି ଅନୁପ୍ରାଣିତ ହୋଇପାରେ ସାଧାରଣ ମଣିଷ । ଜୀବନୀ ସାହିତ୍ୟ ସାଧାରଣତଃ ଦୁଇଟି ପ୍ରଧାନ ପର୍ଯ୍ୟାୟରେ ରଚିତ ହୋଇପାରେ । ତାହାହେଲା – ଜୀବନୀ ଓ ଆତ୍ମଜୀବନୀ । ଯେଉଁ ମହାନ୍ ବ୍ୟକ୍ତିବିଶେଷ ନିଜର ଜୀବନ କାହାଣୀକୁ ନିୟତ ଭାବରେ ସତ୍ୟ ଓ ଶୃଙ୍ଖଳିତ ଧାରାରେ ନିଜେ ରଚନା କରେ ତାହାକୁ ଆତ୍ମଜୀବନୀ କୁହାଯାଉଥିବାବେଳେ ଯେଉଁ ବରପୁତ୍ରର ଜୀବନ କାହାଣୀ ଅନ୍ୟଦ୍ୱାରା ରଚିତ ହୁଏ ତାହାକୁ ଜୀବନୀ କୁହାଯାଇଥାଏ ।

ଜୀବନୀ ହେଉ ବା ଆତ୍ମଜୀବନୀ – ଏଥିରେ ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିର ଜନ୍ମ, ଜୀବନ, କର୍ମଧାରା ଏବଂ ମୃତ୍ୟୁକାଳ ଲିପିବଦ୍ଧ ହେବା ସହିତ ବ୍ୟକ୍ତିର ଜୀବନଶୈଳୀ, ଆଦର୍ଶ, ସମାଜକୁ ତା'ର ଦିଗ୍‌ଦର୍ଶନର ବାର୍ତ୍ତା ସାଥୀରେ ତତ୍କାଳୀନ ସମାଜର ସାମାଜିକ, ଅର୍ଥନୈତିକ, ରାଜନୈତିକ ଏବଂ ସାଂସ୍କୃତିକ ପରିବେଶ ଓ ପରିସ୍ଥିତିର ସ୍ଥିତାବସ୍ଥା ସୂଚିତ ହୋଇଥାଏ ।

କୌଣସି ମହନୀୟ ବ୍ୟକ୍ତିତ୍ୱର ଜୀବନଧାରା ଅନ୍ୟମାନଙ୍କ ପାଇଁ ଆଦର୍ଶର ପରାକାଷ୍ଠା ହୋଇ ରହିପାରେ । ଭାଗବତର ସେହି ସ୍ମରଣୀୟ ପଦକୁ ସ୍ମରଣ କରାଯାଇପାରେ । ଯଥା - "ମହତେ ଯାହା ଆଚରିବେ, ଇତରେ ତାହାହିଁ କରିବେ" । ମଣିଷର ଜୀବନ ପଥ ଯେତେ କଣ୍ଟକିତ ହେଲେ ବି ପ୍ରକୃତ ମହତ୍ ସାଧନାଶୀଳ ବ୍ୟକ୍ତି ସବୁ ବାଧାବିଘ୍ନକୁ ପଛକରି, ସବୁ ସଙ୍କଟକୁ ସାମ୍ନାକରି ସଂଭାବନାର ଆଲୋକବର୍ତ୍ତିକା ନିମନ୍ତେ ପ୍ରଧାବିତ ହୋଇଥାଏ ଏବଂ ସେହି ନିଷ୍ଠା, ସାଧନା ଓ ଏକାଗ୍ରତା ବଳରେ ସେ ସକଳ ବାଧା, ବନ୍ଧନ ବା ଅନ୍ତରାୟକୁ ଏଡ଼ାଇଦେଇ ପଙ୍କରୁ ପଦ୍ମପରି ଉଜ୍ଜ୍ୱଳତାର ସହ ସମାଜରେ ପ୍ରତିଭାତ ହୁଏ । ସେ ଯେଉଁ ମହନୀୟ ଚିନ୍ତା ଚେତନାରେ ଉଦ୍ଭାସିତ ହୁଏ, ତାକୁ କାର୍ଯ୍ୟକାରୀ କରେ ଏବଂ ନିଜର ସମସ୍ତ ଉଚ୍ଚାଭିଳାଷକୁ ସାକାର କରିପାରେ ।

ସେହିପରି ବ୍ୟକ୍ତି ବିଶେଷଙ୍କ ଜୀବନ କାହାଣୀ ଅନ୍ୟମାନଙ୍କ ପାଇଁ ଧ୍ୟେୟ ହୋଇ ରହେ । ସେହି ପରିପ୍ରେକ୍ଷୀରେ ସାରା ବିଶ୍ୱରେ ବହୁ କବି, ଲେଖକ, ବୈଜ୍ଞାନିକ, ସମାଜସେବୀ, ସ୍ୱାଧୀନତା ସଂଗ୍ରାମୀ, ଦେଶସେବୀ ଓ ମୁକ୍ତିଯୋଦ୍ଧା ମାନଙ୍କର ଜୀବନ କାହାଣୀ ରଚିତ ହୋଇଅଛି । ସେହି କ୍ରମରେ ଯଶସ୍ୱୀ ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ଜୀବନ ଚରିତ ଉପରେ ଆଲୋକପାତ କରାଯାଇପାରେ ।

## ଜନ୍ମ ଓ ଜନ୍ମସ୍ଥାନ

ନାଟ୍ୟକାର ବିଶ୍ୱଜିତ୍ ଦାସ ୧୯୩୬ ମସିହା ଅଗଷ୍ଟ ୧୮ ତାରିଖରେ ବିରଜାକ୍ଷେତ୍ର ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକସ୍ଥ ବାଉଁଶବାଡ଼ି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପିତାଙ୍କ ନାମ ସୁବୋଧ ଦାସ ଏବଂ ମାତା - କୃଷ୍ଣା କାମିନୀ ଦେବୀ । ବିଶ୍ୱଜିତ୍‌ଙ୍କ ପିତା ଓ ମାତା ଉଭୟ ବେତାର କେନ୍ଦ୍ରରେ କାର୍ଯ୍ୟ କରିଛନ୍ତି । ପିତାମାତାଙ୍କ ଦ୍ୱାରା ପ୍ରଭାବିତ ବୋଲି ସେ ସବୁଠି ସ୍ୱୀକାର କରିଛନ୍ତି ।

ପିତା ସୁବୋଧ ଦାସ ମଧ୍ୟ ଜଣେ ନାଟ୍ୟକାର । ଅଭିନୟ କରିବା ସହିତ ନାଟ୍ୟରଚନାରେ ସେ ନିଜକୁ ନିୟୋଜିତ କରିଥିଲେ । ତାଙ୍କ 'କର୍ଣ୍ଣାର୍ଜୁନ' ନାଟକ ଓଡ଼ିଆ ପୌରାଣିକ ନାଟ୍ୟଧାରାରେ ଏକ ମାଇଲଖୁଣ୍ଟ ସଦୃଶ ବିଦ୍ୟମାନ । ସୁବୋଧ ଦାସ ଥିଲେ ଯେପରି ଜଣେ ମାନବ ପ୍ରେମୀ, ସଂସ୍କୃତିପ୍ରାଣ ବ୍ୟକ୍ତି, ତାଙ୍କ ପତ୍ନୀ କୃଷ୍ଣାକାମିନୀ ଦେବୀ ଥିଲେ ସେହିପରି ଜଣେ ମେଳାପୀ, ମୂଲ୍ୟବୋଧରେ ବିଶ୍ୱାସ କରୁଥିବା ଦରଦୀ ମହିଳା ତଥା ଜଣେ ସମାଜ ସେବିକା । ସେ ଥିଲେ ଧର୍ମପ୍ରାଣା ଏବଂ ପରୋପକାରୀ । ବେତାରରେ ଘୋଷିକା ଓ ଜଣେ କଳାକାରଭାବେ ସେ ଅନେକଦିନ କାର୍ଯ୍ୟ କରିଥିଲେ ।

ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିତାମାତାଙ୍କ ଆଦର୍ଶ ଓ ସାହିତ୍ୟପ୍ରୀତି ବାଲ୍ୟକାଳରୁ ବିଶ୍ୱଜିତ୍‌ଙ୍କୁ ଗଭୀରଭାବେ ଉଦ୍‌ବୁଦ୍ଧ କରିଥିଲା । ବାଲ୍ୟକାଳରୁ ପାଲା, ଯାତ୍ରା ଓ ନାଟକ ଆଦି ଦେଖି ତାଙ୍କର ନାଟ୍ୟକଳା ପ୍ରତି ଯଥେଷ୍ଟ ଆଦର, ଆଗ୍ରହ ଓ ଆକର୍ଷଣ ବଢ଼ି ଯାଇଥିଲା ।

## ଶିକ୍ଷା

ବିଶ୍ୱଜିତ୍ ଦାସ ଗାଁ ସ୍କୁଲରୁ ପ୍ରାଥମିକ ଶିକ୍ଷା ଓ ମାଧ୍ୟମିକ ଶିକ୍ଷା ଶେଷ କରି କଟକ ପ୍ୟାରୀ ମୋହନ ଏକାଡେମୀରେ ନାମ ଲେଖାଇଲେ । ସେହି ସ୍କୁଲରୁ ମାଟ୍ରିକ୍ ପାସ୍ କରି କଟକର ରେଭେନ୍‌ସା କଲେଜରେ ଆଇ.ଏ.ଶ୍ରେଣୀରେ ନାମ ଲେଖାଇଥିଲେ । ରେଭେନ୍‌ସା କଲେଜରୁ ଆଇ.ଏ ଓ ବି.ଏ. ପାସ୍ କରିଥିଲେ ।

## ଦାମ୍ପତ୍ୟ ଜୀବନ

ବିଶ୍ୱଜିତ୍ ଦାସ ନିଜର ଶିକ୍ଷା ଶେଷ କରିବା ପରେ ସରକାରୀ ଚାକିରିରେ ଯୋଗଦାନ କଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକସମ୍ପର୍କ ବିଭାଗରେ ସୂଚନା ଅଧିକାରୀ ଭାବେ ଯୋଗଦାନ କରି ସେ ବେଶ୍ ନିଷ୍ଠାର ସହ ସରକାରୀ କାର୍ଯ୍ୟ ସମ୍ପାଦନ କରିଥିଲେ । ୧୯୬୨ ମସିହାରେ ବିଶ୍ୱଜିତ୍‌ଙ୍କର ଗାୟତ୍ରୀ ଦାସଙ୍କ ସହିତ ଶୁଭ ପରିଣୟ ସମ୍ପନ୍ନ ହୋଇଥିଲା । ତରୁଣ ବିଶ୍ୱଜିତ୍ ବିବାହ ପରେ ପାରମ୍ପରିକ ରୀତିରେ ସାଂସାରିକ ଜୀବନ ବିତାଇଥିଲେ ମଧ୍ୟ ସେ ସାହିତ୍ୟ ସାଧନା ଓ ନାଟ୍ୟକର୍ମରୁ କେବେବି ଦୂରେଇ ଯାଇ ନ ଥିଲେ । ପତ୍ନୀ ଗାୟତ୍ରୀ ଦେବୀ ଥିଲେ ଉଚ୍ଚଶିକ୍ଷିତା ଏବଂ ଜଣେ ଶିକ୍ଷୟତ୍ରୀ ଭାବେ ସରକାରୀ ଚାକିରିରେ ନିଯୁକ୍ତି ପାଇଥିଲେ । ସାଧାରଣତଃ ଶିକ୍ଷକ ଶିକ୍ଷୟତ୍ରୀମାନଙ୍କ ପୁତ୍ର କନ୍ୟାମାନେ କୁପଥଗାମୀ ହେବାର ବିଶେଷ ଦେଖାଯାଏ ନାହିଁ ବରଂ ସେମାନେ ଉତ୍ତମ ଶିକ୍ଷା ଲାଭକରି ସମାଜରେ ସୁପ୍ରତିଷ୍ଠିତ ହୋଇଥାଆନ୍ତି । ଶିକ୍ଷକ, ଶିକ୍ଷୟତ୍ରୀମାନେ ମୂଲ୍ୟବୋଧରେ ବିଶ୍ୱାସ କରନ୍ତି । ଧର୍ମ, ନ୍ୟାୟ ଓ ଶୃଙ୍ଖଳାଠାରୁ ଦୂରେଇ ଯାଆନ୍ତି ନାହିଁ । ସେହି ଧାରାରେ ବିଶ୍ୱଜିତ୍ ଦାସ ଓ ଗାୟତ୍ରୀ ଦେବୀଙ୍କର ପିଲାମାନେ ବେଶ୍ ଶୃଙ୍ଖଳିତ ଓ ଶିକ୍ଷାରେ ମନଯୋଗୀ ହୋଇପାରିଥିଲେ । ତାଙ୍କର ଚାରିଟି କନ୍ୟା ଓ ଗୋଟିଏ ମାତ୍ର ପୁତ୍ର ସନ୍ତାନ ଜାତ ହୋଇଥିଲେ । ସମସ୍ତେ ଉଚ୍ଚ ଶିକ୍ଷା ଲାଭକରି ଉଚ୍ଚ ପଦ ପଦବୀରେ ଅଧିଷ୍ଠିତ ହୋଇ ସୁପାତ୍ରରେ ବିବାହ କରିଥିଲେ । ନାଟ୍ୟକାର ବିଶ୍ୱଜିତ୍ ନିଜର ସରକାରୀ କର୍ମ, ନାଟ୍ୟରଚନା ଓ ନାଟ୍ୟକର୍ମରେ ବ୍ୟସ୍ତ ରହିଲେ ମଧ୍ୟ ଗାୟତ୍ରୀ ଦେବୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପୁତ୍ର କନ୍ୟାମାନଙ୍କ ବୌଦ୍ଧିକ ଜୀବନ ଗଠନରେ କୌଣସି ବ୍ୟତିକ୍ରମ ଘଟି ନ ଥିଲା ।

ପତି ବିଶ୍ୱଜିତ୍ ଦାସଙ୍କ ପ୍ରତି ପତ୍ନୀ ଗାୟତ୍ରୀ ଦେବୀଙ୍କର ସହଯୋଗର ଊଣା ନ ଥିଲା ।

ନାଟ୍ୟ ରଚନା ଓ ନାଟ୍ୟକର୍ମ ପରି ଜଟିଳ କର୍ମରେ ବିଶ୍ୱଜିତ୍ ଦାସଙ୍କୁ ଗାୟତ୍ରୀ ଦେବୀଙ୍କ ସହଯୋଗର ତୁଳନା ନ ଥିଲା । ଗାୟତ୍ରୀ ଦେବୀ ନିଜେ ଏକ ସାକ୍ଷାତକାରରେ ସ୍ୱୀକାର କରିଛନ୍ତି ଯେ ବିଶ୍ୱଜିତ୍ ବାବୁଙ୍କ ନାଟକ ରିହର୍ସେଲ୍ ନିମନ୍ତେ ସେ କେବେ କେବେ ରାତ୍ରି ଦୁଇଟା ପର୍ଯ୍ୟନ୍ତ ଅନିଦ୍ରା ରହିଛନ୍ତି ତ କେବେ ଅଭିନେତା ଅଭିନେତ୍ରୀମାନଙ୍କ ଖାଦ୍ୟ ବ୍ୟବସ୍ଥା ବି କରିଛନ୍ତି । କେବଳ ସେତିକି ନୁହେଁ ବିଶ୍ୱଜିତ୍‌ଙ୍କ ନାଟକର ପାଣ୍ଡୁଲିପି ପ୍ରସ୍ତୁତରେ ମଧ୍ୟ ସେ ବହୁଭାବରେ ସହାୟକ ହୋଇଅଛନ୍ତି ।

## ବୃତ୍ତି .

ବିଶ୍ୱଜିତ୍ ଦାସ ନିଜେ ଜଣେ ବ୍ୟସ୍ତ ବହୁଳ ନାଟ୍ୟକାର ଏବଂ ନାଟ୍ୟ ନିର୍ଦ୍ଦେଶକ ହୋଇଥିଲେ ମଧ୍ୟ ସରକାରୀ କାର୍ଯ୍ୟରେ କେବେ ଅବହେଳା କରିନାହାନ୍ତି । ନିଷ୍ଠାର ସହ ନିଜର ଦାୟିତ୍ୱ ତୁଲାଇ ଯଥାରୀତିରେ ଚାକିରିରେ ପଦୋନ୍ନତି ପାଇ ପାରିଥିଲେ ।

ସୂଚନା ଅଧିକାରୀରୁ ଚାକିରି ଜୀବନ ଆରମ୍ଭ କରି ସୂଚନା ଓ ଲୋକସମ୍ପର୍କ ବିଭାଗର ଯୁଗ୍ମନିର୍ଦ୍ଦେଶକ ପଦବୀରେ ଅଧିଷ୍ଠିତ ହୋଇ ପାରିଥିଲେ । ସେ ମଧ୍ୟ ଅନେକ ବର୍ଷ ଧରି ସଂସ୍କୃତିପ୍ରାଣ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦପ୍ତରରେ ମୁଖ୍ୟମନ୍ତ୍ରୀଙ୍କ ସୂଚନା ଅଧିକାରୀ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ସୁଚାରୁରୂପେ ନିଜର ବୃତ୍ତିଗତ କାର୍ଯ୍ୟ ସମ୍ପାଦନ କରି ସେ ୧୯୯୪ ମସିହାରେ ସରକାରୀ ଚାକିରିରୁ ଅବସର ଗ୍ରହଣ କରିଥିଲେ ।

## ସାହିତ୍ୟ ସାଧନା

ପିତା ସୁବୋଧ ଦାସ ଓ ମାତା କୃଷ୍ଣା କାମିନୀ ଦେବୀଙ୍କ ପ୍ରଭାବ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ବିଶ୍ୱଜିତ୍ ଦାସ ଛାତ୍ରକାଳରୁ ଗଳ୍ପ, କବିତା ଆଦି ରଚନା କରୁଥିଲେ ମଧ୍ୟ ରେଭେନ୍ସା କଲେଜରେ ପଢୁଥିବା ସମୟରେ ନାଟକ ରଚନାରେ ଗଭୀରଭାବେ ମନୋନିବେଶ କରିଥିଲେ । ସ୍କୁଲ, କଲେଜ ନିମନ୍ତେ ଏକାଙ୍କିକା ରଚନା କରି ପ୍ରଶଂସିତ ହେବା ସଙ୍ଗେସଙ୍ଗେ ୧୯୫୭ ମସିହାରେ ରେଭେନ୍ସା କଲେଜରେ ପଢୁଥିବା ସମୟରେ ଭାରତର ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକୀ ପାଳନ ଅବସରର ଓଡ଼ିଶା ସରକାରଙ୍କ ଦ୍ୱାରା ଆୟୋଜିତ ନାଟକ ଉତ୍ସବରେ ତାଙ୍କ ନାଟକ ସର୍ବଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ ହେବାପରେ ଯୁବନାଟ୍ୟକାର ବିଶ୍ୱଜିତ୍ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ସେ ଗୋଟିକ ପରେ ଗୋଟିଏ ନାଟକ ରଚନା କରି ଓଡ଼ିଆ ନାଟ୍ୟ ସାହିତ୍ୟକୁ ବହୁଭାବରେ ସମୃଦ୍ଧ କରିଅଛନ୍ତି ।

ବିଶ୍ୱଜିତ୍ ଦାସ ଥିଲେ ଜଣେ ନିରୁତା ଓ ନିଖୁଣ ନାଟ୍ୟକାର । ନାଟ୍ୟ ରଚନା ସହିତ ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ମଧ୍ୟ ସେ ଥିଲେ ଜଣେ ସଫଳ ବିନ୍ଧାଣୀ । ସେ ରଙ୍ଗମଞ୍ଚ ନିମନ୍ତେ

ଯେପରି ପୂର୍ଣ୍ଣାଙ୍ଗ ନାଟକ ଓ ଏକାଙ୍କିକା ରଚନା କରି ଯଶସ୍ୱୀ ହୋଇଛନ୍ତି, ଠିକ୍ ସେହିପରି ବେତାର ନିମନ୍ତେ ବେତାର ନାଟକ, ପ୍ରଥପ୍ରାନ୍ତ ନିମନ୍ତେ ପ୍ରଥପାନ୍ତର ନାଟକ ଏବଂ ଦୂରଦର୍ଶନ ନିମନ୍ତେ ନାଟକ ଓ ଧାରାବାହିକ ରଚନା କରି ଉଚ୍ଚ ପ୍ରସଂଶିତ ହେଇଅଛନ୍ତି । ଶତାଧିକ କଳାକାରଙ୍କୁ ନେଇ ତାଙ୍କର ମୁକ୍ତାଙ୍ଗନ ନାଟକ 'ସୂର୍ଯ୍ୟୋଦୟର ପଥେ' ତାଙ୍କର ପ୍ରତିଭାର ଅନ୍ୟତମ ନିଦର୍ଶନ ଭାବେ ପରିଗଣିତ ।

## ତିରୋଧାନ

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ମୃତ୍ୟୁ ଥିଲା ଯେପରି କରୁଣ ସେହିପରି ନାଟକୀୟ । ଜଣେ ନାଟ୍ୟପ୍ରାଣ ବ୍ୟକ୍ତି କିପରି ଏକ ନାଟ୍ୟବଳୟ ମଧ୍ୟରେ ପରଲୋକ ଗମନ କରିପାରେ, ତାହା ଥିଲା ତାଙ୍କ ପକ୍ଷରେ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ୨୦୦୪ ମସିହା ଡିସେମ୍ବର ୩୦ ତାରିଖ ଅପରାହ୍ଣ । ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ସଂସ୍କୃତି ଭବନର ଏକ ପ୍ରେକ୍ଷାଗୃହରେ ଆୟୋଜିତ ହୋଇଥାଏ ଏକ ନାଟ୍ୟ ଆଲୋଚନାଚକ୍ର । ସେହି ଆଲୋଚନା ଚକ୍ରରେ ମୁଖ୍ୟବକ୍ତା ଭାବେ ଯୋଗଦାନ କରିଥାନ୍ତି ନାଟ୍ୟକାର ବିଶ୍ୱଜିତ୍ ଦାସ । ସଭା ମଞ୍ଚରେ ଓଡ଼ିଶା ସାହିତ୍ୟ ଏକାଡେମୀର ତତ୍କାଳୀନ ସଭାପତି କବି ଦୀପକ ମିଶ୍ର ଓ ସଚିବ ଡଂ. ଚନ୍ଦ୍ର ଶେଖର ଦାସବର୍ମା । ସଭାଗୃହରେ ଥିଲେ ଏହି ଆଲୋଚକ ସମେତ ବହୁ ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ, ସାହିତ୍ୟିକ, ଅଭିନେତା, ଅଭିନେତ୍ରୀ ଏବଂ ସାହିତ୍ୟପ୍ରେମୀ ତଥା ନାଟ୍ୟପ୍ରେମୀ ସୁଧୀମଣ୍ଡଳୀ । ନାଟ୍ୟକାର ବିଶ୍ୱଜିତ୍ ଦାସ ମୁଖ୍ୟବକ୍ତା ଭାବେ ତାଙ୍କର ଲିଖିତ ଭାଷଣ ପାଠ କଲେ । ଭାଷଣ ଶେଷ ହେବାର ସାମାନ୍ୟ ପୂର୍ବରୁ ସେ ହଠାତ୍ ଟଳିପଡ଼ିଲେ । ତାଙ୍କ ମୁହଁରେ ଟିକିଏ ପାଣି ଛାଟିବା ପରେ ସେ ଚାହିଁଲେ ଏବଂ କହିଲେ ମୋତେ କେମିତି ସବୁ ଅନ୍ଧାର ଦିଶିଲା । ଏହି ଅଟ୍ଟାଳିକାଟି ଘୂରିଗଲାଭଳି ପ୍ରତେ ହେଲା । ମୋର ବକ୍ତବ୍ୟ ତ ଶେଷ ହୋଇଯାଇଛି । ଏଥର ସଭା କାର୍ଯ୍ୟ ଚାଲୁରଖନ୍ତୁ । ତାଙ୍କୁ ବସାଇ ଦିଆଗଲା । ବସିବାର ମାତ୍ର ଏକ ମିନିଟ୍ ପରେ ତାଙ୍କ ମୁଣ୍ଡଟି ଟଳିଗଲା । ତା'ପରେ ସବୁ ଶେଷ । ତାଙ୍କୁ ସଙ୍ଗେ ସଙ୍ଗେ ରାଜଧାନୀର ବଡ଼ ଡାକ୍ତରଖାନାକୁ ନିଆଯାଇଥିଲା ସତ, କିନ୍ତୁ ତାଙ୍କର ପ୍ରାଣବାୟୁ ସେତେବେଳକୁ ଉଡ଼ିଯାଇଥିଲା ।

ଏପରି ଏକ ନାଟକୀୟ ମୃତ୍ୟୁ କଥା ଭାବିଲେ ବିସ୍ମୟ ଜାତହୁଏ । ଏପରି ଜଣେ ବର୍ଷିୟାନ୍ ଲବ୍ଧପ୍ରତିଷ୍ଠ ନାଟ୍ୟକାରଙ୍କ ଅବସାନ ଓଡ଼ିଆ ନାଟ୍ୟଜଗତ ପ୍ରତି ନିଶ୍ଚିତ ଭାବେ ଥିଲା ଏକ ଅଖଣ୍ଡ ଶୂନ୍ୟସ୍ଥାନ ।

**ବଂଶଲତା :**

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ବଂଶଲତା ଥିଲା ଏହିପରି



## ତୃତୀୟ ଅଧ୍ୟାୟ

# ବିଶ୍ୱଜିତ୍ ଦାସଙ୍କ ସୃଷ୍ଟି ସମ୍ଭାର

ବିଶ୍ୱଜିତ୍ ଦାସ ଛାତ୍ରକାଳରେ କିଛି କିଛି ଗଳ୍ପ, କବିତା ରଚନା କରିଥିଲେ ହେଁ ନାଟକ ରଚନା ଥିଲା ତାଙ୍କ ସୃଷ୍ଟି ସଂଭାରର ମୁଖ୍ୟ ଉପାଦାନ । ସେ ସମଗ୍ର ଜୀବନକାଳ ନାଟ୍ୟ ରଚନା ଓ ନାଟ୍ୟକର୍ମରେ ହିଁ ବିତାଇଛନ୍ତି । ନିଜର ବ୍ୟକ୍ତିଗତ ଜୀବନ ଓ ଜୀବିକା ସହିତ ସାରସ୍ୱତ ସାଧନାକୁ ସେ ହାତଛଡ଼ା କରିନାହାନ୍ତି । କେବେକେବେ ସଂସାର ଚାପରେ ପୁଣି କେତେବେଳେ ସରକାରୀ କାର୍ଯ୍ୟର ଚାପରେ ତାଙ୍କର ଲେଖନୀ ସାରସ୍ୱତ ସୃଷ୍ଟି ନିମନ୍ତେ ନୀରବି ଯାଇଥିଲେ ମଧ ପରବର୍ତ୍ତୀ ସମୟରେ ସେ ପୁନଶ୍ଚ ସକ୍ରିୟ ହୋଇ ଉଠିଛନ୍ତି ।

ତାଙ୍କ ସୃଷ୍ଟି ସଂଭାର ସଂପର୍କରେ ଏଠାରେ କିଂଚିତ୍ ଆଲୋଚନା କରାଗଲା ।

## ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ 'ବହ୍ନି'ରେ ଦେଶ ପ୍ରେମ ଓ ମୁକ୍ତି ସଂଗ୍ରାମର ଚିତ୍ର

ବିଶ୍ୱଜିତ୍ ଦାସ ପୂର୍ଣ୍ଣାଙ୍ଗ ନାଟକ ରଚନା କରିବା ପୂର୍ବରୁ ଅଳ୍ପ କେତୋଟି ଏକାଙ୍କିକା ରଚନା କରିଥିଲେ ମଧ ରେଭେନ୍ସା କଲେଜରେ ଛାତ୍ରଥିବା ସମୟରେ ସେ 'ବହ୍ନି' ନାମକ ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ ରଚନା କରିଥିଲେ । ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକୀ (୧୮୫୭ରୁ ୧୯୫୭) ଉପଲକ୍ଷେ ସେ 'ବହ୍ନି' ନାଟକ ରଚନା କରିଥିଲେ, ଯାହାକି ଉତ୍କଳ ନୃତ୍ୟ ସଂଗୀତ ପରିଷଦ ଦ୍ୱାରା ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନର ଶତବାର୍ଷିକୀ ଉତ୍ସବରେ ଅଭିନୀତ ହୋଇ ସର୍ବଶ୍ରେଷ୍ଠ ନାଟକ ରୂପେ ପୁରସ୍କୃତ ହୋଇଥିଲା ଏବଂ ଯୁବନାଟ୍ୟକାର ବିଶ୍ୱଜିତ୍‌ଙ୍କୁ ଦେଇଥିଲା ଯଶ ଓ ଯଥେଷ୍ଟ ଲୋକପ୍ରିୟତା ।

ବହ୍ନି (୧୯୫୭) ନାଟକଟି ଥିଲା ମୁଖ୍ୟତଃ ଏକ ଚରିତ୍ର ପ୍ରଧାନ ସାମାଜିକ ନାଟକ । ସ୍ୱାଧୀନତା ସଂଗ୍ରାମ ଥିଲା ତା'ର ମୁଖ୍ୟ ପୃଷ୍ଠଭୂମି । ଏକ କ୍ଷୁଦ୍ର ସାମାଜିକ କଥାବସ୍ତୁର ଛତ୍ରେ ଛତ୍ରେ ପାତ୍ରାଭିମୁଖୀ ରୁଚିପୂର୍ଣ୍ଣ ଉନ୍ନତ ସଂଳାପ ସହିତ ଉପଯୁକ୍ତ ସଂଘାତ ସମାବେଶରେ ବିଶ୍ୱଜିତ୍

ନାଟକ 'ବହ୍ନି'କୁ ବେଶ୍ ଭାବଗର୍ଭକ ଓ ପ୍ରଭାବଶାଳୀ କରିପାରିଥିଲେ । ସେହି 'ବହ୍ନି' ନାଟକର ସଫଳତା ହିଁ ବିଶ୍ୱଜିତଙ୍କୁ ଅଶେଷ ଯଶର ଅଧିକାରୀ କରିପାରିଥିଲା ଏବଂ ପରବର୍ତ୍ତୀ କାଳ ନିମନ୍ତେ ନାଟ୍ୟରଚନା ଓ ନାଟ୍ୟଜଗତ ପ୍ରତି ମୋହାବିଷ୍ଟ କରିପାରିଥିଲା । ନାଟକ 'ବହ୍ନି'ରେ ଯଥାର୍ଥ ନାଟକୀୟତା ସହିତ ବହିର୍ଦ୍ୱନ୍ଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ ଯଥାରୀତିରେ ପ୍ରକଟିତ ହୋଇଥିବାରୁ ନାଟକଟି ବିଶେଷ ଉପଭୋଗ୍ୟ ହୋଇଥିଲା ଏବଂ ସେ ସମୟରେ ବେଶ୍ ଚହଳ ପକାଇଥିଲା । ମାନସିକ ଦ୍ୱନ୍ଦ୍ୱ ଏବଂ ଚାରିତ୍ରିକ ସଂଘର୍ଷ ଭିତରେ ନାଟକ ଗତିଶୀଳ ଥିବାରୁ ନାଟକର ଉତ୍କଣ୍ଠା ଯଥାରୀତିରେ ରକ୍ଷା କରାଯାଇ ପାରିଥିଲା ଏବଂ ଦର୍ଶକଙ୍କ ଦ୍ୱାରା ପ୍ରଶଂସିତ ହୋଇ ପାରିଥିଲା । ନାଟ୍ୟକାର ବିଶ୍ୱଜିତ୍ ଏକ ଉଚ୍ଚପଦସ୍ଥ ବ୍ରିଟିଶ୍ କର୍ମଚାରୀ ଏବଂ ତାଙ୍କର ଦେଶପ୍ରେମୀ ମୁକ୍ତି ସଂଗ୍ରାମୀ ଶିକ୍ଷକ ପୁତ୍ରର ସଂଘର୍ଷକୁ ଉପଜୀବ୍ୟ କରି ନାଟକଟିକୁ ଅତ୍ୟନ୍ତ ମନୋଜ୍ଞ ପରିପାଟୀରେ ରଚନା କରି ସଫଳ ହୋଇଛନ୍ତି ।

ରାୟ ବାହାଦୂର ରୁଦ୍ରଚରଣ ମହାପାତ୍ର ବ୍ରିଟିଶ ଶାସକ ଅଧୀନରେ ଜଣେ ଉଚ୍ଚପଦସ୍ଥ ପ୍ରଶାସକ । ସୌଦାମିନୀ ରୁଦ୍ରଚରଣଙ୍କ ଧର୍ମପତ୍ନୀ ଏବଂ ରୁଦ୍ରଚରଣଙ୍କ ଜ୍ୟେଷ୍ଠପୁତ୍ର-ସୁରେନ୍ଦ୍ର ଓ କନିଷ୍ଠପୁତ୍ର ବ୍ରଜଙ୍କର ସ୍ନେହମୟୀ ଜନନୀ । ସୁରେନ୍ଦ୍ର ଜଣେ ଛାତ୍ରନେତା ତଥା ମୁକ୍ତି ସଂଗ୍ରାମର ଯୁବକ ଭାବେ ନେତୃତ୍ୱ ନେଉଥିବାବେଳେ ପିତା ରୁଦ୍ର ଚରଣ ପୁତ୍ରକୁ ସରକାର ବିରୋଧୀ ଅପରାଧୀ ଭାବରେ ଗିରଫ କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ପୋଲିସ୍ ଆସି ସୁରେନ୍ଦ୍ରକୁ ଗିରଫ କରିବାକୁ ଖୋଜୁଥିବା ବେଳେ ରୁଦ୍ରଚରଣ ନିଜ ପୁତ୍ରକୁ ପୋଲିସ୍ ହାତରେ ଧରାଇ ଦେବାକୁ ଟିକିଏ ବି ପଛେଇ ଯାଇ ନାହାନ୍ତି । ତାଙ୍କ ଶାସନ ଆଗରେ ପତ୍ନୀର ପ୍ରାର୍ଥନା, ପୁତ୍ରର ନିରାପତ୍ତା କିଛି ବି ଅନ୍ତରାୟ ସୃଷ୍ଟି କରିପାରି ନାହିଁ । ସୁରେନ୍ଦ୍ର କିନ୍ତୁ ନିଜ ନୀତି ନିଷ୍ଠାରେ ଅଟଳ । ଦେଶଜାତିର ସୁରକ୍ଷା ପାଇଁ, ଭାରତ ବର୍ଷକୁ ବ୍ରିଟିଶ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ସେ ନିଜ ଜୀବନକୁ ବି ବାଜି ଲଗେଇ ଦେଇ ମୁକ୍ତି ସଂଗ୍ରାମର ନେତୃତ୍ୱ ନେଇଛି । ହେମନ୍ତ, ନିଶାର, ପ୍ରସନ୍ନ, ମଧୁ ଓ ନିଜର କନିଷ୍ଠଭ୍ରାତା ବ୍ରଜ ପରି ସଂଗ୍ରାମୀ ଯୁବକମାନଙ୍କ ସହିତ କିଶୋର - ନବୀନ ସମସ୍ତେ ସୁରେନ୍ଦ୍ରର ନେତୃତ୍ୱରେ ସଂଗ୍ରାମରେ ଝାସ ଦେଇ ଅଣ୍ଟାଭିଡ଼ି ଆଗେଇ ଆସିଛନ୍ତି । ଶାନ୍ତି ସୁରେନ୍ଦ୍ରର ଶିକ୍ଷିତା ତରୁଣୀ ପ୍ରତିବେଶିନୀ । ସେ ସବୁ ସମୟରେ ସୁରେନ୍ଦ୍ରକୁ ଅନ୍ତରଙ୍ଗତାର ସହିତ ସହାୟତା ଦେଇଛି ଏବଂ ସେହି ମୁକ୍ତି ସଂଗ୍ରାମରେ ସାମିଲ ହୋଇଛି । ସରକାରୀ ବିରୋଧୀ କାମ ପାଇଁ ସୁରେନ୍ଦ୍ର ପୋଲିସ୍ ଦ୍ୱାରା ଗିରଫ ହୋଇ ଆଜୀବନ କାରାବାରଣ କରିବା ପୂର୍ବରୁ ନିଜେ ନିଜକୁ ନିଃଶେଷ କରିଦେଇଛି । ତା'ର ଶବ ଆଡ଼କୁ ଆଗେଇ ଆସିଛି ଆନ୍ଦୋଳନକାରୀଙ୍କ ଶୋଭାଯାତ୍ରା ଆଉ ଉଚ୍ଚ ସ୍ୱରରେ ଝଙ୍କୃତ ହୋଇଛି 'ବନ୍ଦେ ମା' ତରମ୍'ର ସଂଗ୍ରାମଧ୍ୱନି ।

ଏହା ହିଁ 'ବହ୍ନି' ନାଟକର ମୁଖ୍ୟ ପ୍ରତିପାଦ୍ୟ କଥାବସ୍ତୁ । ମୁକ୍ତି ସଂଗ୍ରାମର ଆଦର୍ଶ ବାର୍ତ୍ତାକୁ ଆଧାର କରି ନାଟକଟି ରଚିତ ହୋଇଛି । ଏହା ଐତିହାସିକ ନାଟକ ପରି ପ୍ରତୀୟମାନ ହୋଇଛି । କିନ୍ତୁ ଏହା ଇତିହାସ ନୁହେଁ - କେବଳ ଏକ ଦେଶାତ୍ମବୋଧକ ନାଟକ ମାତ୍ର । ନାଟ୍ୟକାରଙ୍କ ଅପୂର୍ବ କଳ୍ପନା ସହିତ ସଜୀବ ଚାରିତ୍ରିକ ସମାବେଶରେ ନାଟକ 'ବହ୍ନି' ବେଶ୍ ଜୀବନ୍ତ ହୋଇ ଉଠିଛି । ସୁରେନ୍ଦ୍ର, ଶାନ୍ତି, ରୁଦ୍ରଚରଣ ଓ ସୌଦାମିନୀଙ୍କ ପରି ପ୍ରଧାନ ଚରିତ୍ରମାନେ ଯଥାରୀତିରେ ଅଙ୍କିତ ହୋଇଥିବାବେଳେ ବ୍ରଜ, ହେମନ୍ତ, ପୋଲିସ୍ ଇନିସ୍‌ପେକ୍ଟର ଗୋବିନ୍ଦ, ସର୍ଜେଣ୍ଟ-ହାମିଲ୍‌ଟନ୍, କୁଞ୍ଜ, ପ୍ରସନ୍ନ, ଅବଦୁଲ୍ ଓ ନବୀନ ଆଦି ଚରିତ୍ରମାନେ ବେଶ୍ ସୁନ୍ଦର ଭାବେ ଚିତ୍ରିତ ହୋଇଛନ୍ତି । ଏହି ଚରିତ୍ର ପ୍ରଧାନ ଦେଶାତ୍ମକବୋଧକ ନାଟକର ପ୍ରତିଟି ନାଟ୍ୟ ଉପାଦାନ ସଫଳ ହୋଇଥିବା ବେଳେ ସୁରେନ୍ଦ୍ରକୁ ଆଣି ରିଭଲ୍‌ଭର୍ ଦେଇ ନିଜକୁ ଗୁଳିକରି ଆତ୍ମହତ୍ୟା କରିବାକୁ ହେମନ୍ତର ଇଙ୍ଗିତ ଯଥାର୍ଥ ପ୍ରତ୍ୟୟ ହୁଏ ନାହିଁ । ଆତ୍ମହତ୍ୟା ନ କରି ମୁକ୍ତି ସଂଗ୍ରାମୀ ସୁରେନ୍ଦ୍ର ଦ୍ୱାରା ଅନ୍ୟ କିଛି ପ୍ରୟୋଗ କରାଯାଇ ପାରିଥାନ୍ତା ।

ସାଙ୍ଗିକତା ନାଟକର ଏକ ଆକର୍ଷଣୀୟ ଉପାଦାନ । ବହ୍ନି ପରି ଏକ ଦେଶାତ୍ମବୋଧକ ନାଟକରେ ବି ସୁଯୋଗ ଦେଖି ଯଥାର୍ଥ ପରିସରରେ ନାଟ୍ୟକାର ସଂଗୀତ ସଂଯୋଜନା କରି ନାଟକକୁ ମନଛୁଆଁ କରି ପାରିଛନ୍ତି । ନାଟ୍ୟକାର ବିଶ୍ୱଜିତଙ୍କ ଭାବକଳ୍ପ ସୁଦୂର ପ୍ରସାରୀ । ଏପରି ଏକ ବିୟୋଗାନ୍ତକ ଦୃଶ୍ୟ ମାଧ୍ୟମରେ ସେ ଏକ ଭିନ୍ନ ବାତାବରଣ ସୃଷ୍ଟି କରିବା ନିମନ୍ତେ ନାଟକର ମୁଖ୍ୟ ନାୟକ ନିଜ ହାତରେ ନିଜେ ଗୁଳିକରି ଆତ୍ମହତ୍ୟା କରି ନିଜର ସ୍ୱାଭିମାନକୁ ଉଚ୍ଛକିତ କରାଇଛନ୍ତି ।

ପରାଧୀନ ଭାରତ ବର୍ଷର ନିଚ୍ଛକ ଚିତ୍ର ସହିତ ଶିକ୍ଷିତ ଯୁବକ ଯୁବତୀଙ୍କର ମୁକ୍ତି ସଂଗ୍ରାମ ନିମନ୍ତେ ଅବିରତ ଉଦ୍ୟମ ଓ ଏକନିଷ୍ଠତା ମାଧ୍ୟମରେ ଏକ ଦେଶାତ୍ମବୋଧକ ବାର୍ତ୍ତା ଓ ଆଦର୍ଶ ପ୍ରଚାର କରି ନାଟ୍ୟକାର ଏକ ମହତ୍ତର ଧର୍ମ ପାଳନ କରିବା ସହିତ ସମାଜ ଓ ଦେଶ-ଜାତିପ୍ରୀତିର ପରିଚୟ ପ୍ରତିପାଦନ କରି ପାରିଛନ୍ତି । 'ବହ୍ନି' (୧୯୫୭) ନାଟକ ଥିଲା ବିଶ୍ୱଜିତଙ୍କର ନାଟ୍ୟରଚନାର ପ୍ରଥମ ସିଡ଼ି । 'ବହ୍ନି' ନାଟକ ରଚନା କରି ଯୁବ ନାଟ୍ୟକାର ବିଶ୍ୱଜିତ୍ ସେହି ପ୍ରଥମରୁ ହିଁ ନିଜ ନାଟ୍ୟ ପ୍ରତିଭାର ଯଥାର୍ଥ ପରିଚୟ ପ୍ରତିପାଦନ କରିଛନ୍ତି । 'ବହ୍ନି'କୁ କେହି କେବେ କୌଣସି କଞ୍ଚା ହାତର ରଚନା ବା ନାଟ୍ୟକାରଙ୍କ ଯୁବମାନସର ପ୍ରଥମ ସୃଷ୍ଟି ବୋଲି କଳ୍ପନା କରି ପାରିବ ନାହିଁ । ଏହାକୁ ଅଭିଜ୍ଞ ତଥା ବରିଷ୍ଠ ନାଟ୍ୟକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ରଚନା ବୋଲି ଯେକେହି ବିବେଚନା କରିପାରିବ । 'ବହ୍ନି' ଓଡ଼ିଆ ଭାଷାରେ ରଚିତ କେବଳ ଏକ ଦେଶାତ୍ମବୋଧକ ନାଟ୍ୟ ସୃଷ୍ଟି ନୁହେଁ, ଏହା ଯେ ଓଡ଼ିଆ ନାଟ୍ୟ ସାହିତ୍ୟରେ ଅନ୍ୟ ଏକ ମାଇଲଖୁଣ୍ଟ ଏଥିରେ ସନ୍ଦେହ ନାହିଁ ।

## ବିଶ୍ୱଜିତ୍ ଦାସଙ୍କ ନାଟକର ଅନନ୍ୟ ବୈଶିଷ୍ଟ୍ୟ ଓ ଲୋକପ୍ରିୟତା

ଜୀବନ ଏକ ନାଟକ । ଜୀବନର ହସ କାନ୍ଦ, ବ୍ୟଥା ବ୍ୟର୍ଥତା, ଆଶା ଅଭିଳାଷ, ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର ପ୍ରତିଟି ଚିତ୍ର ଚିତ୍ରାୟିତ ହୋଇଯାଇଥାଏ ନାଟକର ଦୃଶ୍ୟ-ଦୃଶ୍ୟାନ୍ତରରେ । କେତେବେଳେ କିଏ କେଉଁ ଉର୍ଦ୍ଧାୟିତ ଜୀବନ ଜୀଜ୍ଞାସାରେ ଆକାଶର ବ୍ୟାପ୍ତିକୁ ଚିନ୍ତାକରେ ତ କାହାର ଚେତନା ଭିତରେ ବିଲୁପ୍ତ ହୋଇଯାଏ ଆଦର୍ଶର ନିତ୍ୟ ଇସ୍ତାହାର । ଜୀବନର ଟଣାଓଟରା ବା ଛକଶୂନ ଖେଳ ଭିତରେ ସବୁ ସତ୍ୟ, ସବୁ ଅସତ୍ୟ ଓ ସବୁ ମହାସତ୍ୟ ନିରବରେ ରୂପାୟିତ ହୋଇଯାଏ ନାନା ଭାବରେ ନାନା ରୂପରଙ୍ଗରେ । କେବେ ଆଦର୍ଶର ମହାନ୍ ମର୍ମବାଣୀ ପ୍ରତାରଣାର ଖୋଳପା ଭିତରେ ଆତ୍ମଗୋପନ କରେ ତ କେବେ କାହାର ମୁଖା ତଳେ ଚାପି ହୋଇ ରହିଯାଏ ଜୀବନବୋଧର ପ୍ରକୃତ ସତ୍ତା ।

ଏହି ସବୁ ସାମାଜିକ ଜୀବନର ସତ୍ୟତମ ନକ୍ସାମାନ ହିଁ ପ୍ରକୃତରେ ଅଙ୍କିତ ହୋଇଯାଏ ନାଟକର ଦୃଶ୍ୟ ଓ ଅଙ୍କରେ । ତାହା ହିଁ ସମାଜର ଚିତ୍ର । ତାହା ହିଁ ମଣିଷର ଜୀବନ କଥା । ସେହି ମଣିଷର କଥାସର୍ବସ୍ୱ, ନାଟକରେ ଯଥାରୀତିରେ ରୂପାୟିତ ହୋଇଗଲେ ସେ ନାଟକ ଦର୍ଶକଙ୍କ ଦ୍ୱାରା ବେଶି ଆଦୃତ ହୁଏ । ସେହି ନାଟକର ଦର୍ପଣରେ ମଣିଷ ତା' ନିଜ ଛବିକୁ ସ୍ପଷ୍ଟ ଭାବରେ ଦେଖିପାରେ । ସ୍ୱଚ୍ଛନ୍ଦରେ ପଢ଼ିପାରେ । ଏସବୁ ଚିତ୍ରକୁ ଯେଉଁ ନାଟ୍ୟକାର ଅଧିକ ନିଛକ ପରିପାଟୀରେ ଜୀବନ୍ତ ଭାବରେ ଚିତ୍ରାୟିତ କରିପାରେ- ସେ ହୋଇପାରେ ଜଣେ ଦକ୍ଷ ନାଟ୍ୟ ବିନ୍ଧାଣୀ, ପ୍ରଭାବଶାଳୀ ପ୍ରତିଭାଧର ନାଟ୍ୟକାର ।

ସେହିପରି ଜଣେ ସୁଦକ୍ଷ ରୂପକାର ହେଉଛନ୍ତି ନାଟ୍ୟକାର ବିଶ୍ୱଜିତ୍ ଦାସ । ବିଶ୍ୱଜିତ୍ ଦାସ ଛାତ୍ରକାଳରୁ କଲମ ଧରିଛନ୍ତି ନାଟ୍ୟ ରଚନା ନିମନ୍ତେ । ପିତା ନାଟ୍ୟକାର ସୁବୋଧ ଦାସ ଏବଂ ମାତା ସମାଜସେବିକା କୃଷ୍ଣା କାମିନୀ ଦେବୀଙ୍କ ଅନନ୍ୟ ପ୍ରେରଣାରେ ଉଦ୍‌ବୁଦ୍ଧ ବିଶ୍ୱଜିତ୍ ଛାତ୍ରବେଳୁ ନାଟ୍ୟ କର୍ମରେ ନିମଜ୍ଜିତ ରହି ନାଟକରେ ନାନାଦି ପରୀକ୍ଷା ନିରୀକ୍ଷା କରି ସଫଳ ହୋଇଅଛନ୍ତି । ପାଠପଢ଼ା ପରେ ସରକାରୀ ଚାକିରି ଓ ନିଜ ସଂସାରଚର୍ଯ୍ୟା ମଧ୍ୟରେ ବି ସେ ନାଟକର ରଙ୍ଗୀଭ ଆଭରଣ ଭିତରେ ଆଚ୍ଛନ୍ନ ହୋଇ ରହିଛନ୍ତି । ସାରା ଜୀବନ ତାଙ୍କ ଏକନିଷ୍ଠ ସାରସ୍ୱତ ସାଧନା ଏବଂ ନାଟ୍ୟ ଆରାଧନା ଭିତରେ ସେ ସୃଷ୍ଟି କରିବାକୁ ସମର୍ଥ ହୋଇପାରିଛନ୍ତି- ରାଶି ରାଶି ନାଟକ ଓ ଏକାଙ୍କିକା । ତାଙ୍କ ଦ୍ୱାରା ରଚିତ ନାଟକ 'ବୃତ୍ତେ' ଠାରୁ 'ମୃଗୟା' ପର୍ଯ୍ୟନ୍ତ, ଅଥବା 'ଶ୍ରେଷ୍ଠାଂଶେ ନଟବର' ଠାରୁ 'ମହାମାୟା ଅପେରା' ପର୍ଯ୍ୟନ୍ତ ଅଥବା 'ଚିଫ୍‌ଗେଷ୍ଟ' ଠାରୁ 'ସେଇ ତିନିଜଣ' ଯାଏ ତାଙ୍କର ପ୍ରତିଟି ନାଟ୍ୟସମ୍ଭାର ଓଡ଼ିଆ ନାଟ୍ୟ ସାହିତ୍ୟରେ ଗୋଟିଏ ଗୋଟିଏ ରତ୍ନ ସଦୃଶ ବିଦ୍ୟମାନ ହୋଇଅଛି । ବିଶ୍ୱଜିତ୍ ଦାସଙ୍କ ନାଟକରେ ବିଚକ୍ଷଣ କଥାବସ୍ତୁ ସହିତ ଉନ୍ନତ ନାଟକୀୟତାର ଛତ୍ରେ ଛତ୍ରେ ଯଥାର୍ଥ ଚରିତ୍ର

ଚିତ୍ରଣ, ଉପଯୁକ୍ତ ସଂଘାତ ଓ ସଂଳାପ ସଂଯୋଜନା କରାଯାଇଥାଏ । ପ୍ରତିଟି ନାଟ୍ୟ ଉପାଦାନର ସଂଯୋଗରେ ପ୍ରଭାବଶାଳୀ ନାଟକମାନ ରଚନା କରି ଲୋକପ୍ରିୟତା ଅର୍ଜନ କରିବା ହେଉଛି ବିଶ୍ୱଜିତ୍ ଦାସଙ୍କ ନାଟ୍ୟ ରଚନାର ପ୍ରଧାନ ବୈଶିଷ୍ଟ୍ୟ ।

ନାଟ୍ୟ ରଚନା ସହିତ ନାଟକରେ ଅଭିନୟ ଓ ନାଟ୍ୟ ନିର୍ଦ୍ଦେଶନା ତାଙ୍କର ଅନ୍ୟତମ ସଫଳ ସାଂସ୍କୃତିକ ଦିଗନ୍ତ । ସରକାରୀ ଚାକିରି ସହିତ ସମଗ୍ର ଜୀବନ କାଳ କେବଳ ଏହି ନାଟ୍ୟକର୍ମ ସମ୍ପାଦନ କରି ସେ ଇହଧାମ ତ୍ୟାଗ କରିଛନ୍ତି । ସେ ଆଜି ଆମ ଗହଣରେ ନ ଥିଲେ ମଧ୍ୟ ତାଙ୍କ ନାଟ୍ୟପ୍ରତିଭା ତଥା ନାଟ୍ୟସମ୍ଭାର ତାଙ୍କୁ ଯେ ଚିରକାଳ ଅମର କରି ରଖିବ, ଏଥିରେ ସନ୍ଦେହ ନାହିଁ ।

ଏକଦା ନାଟ୍ୟକାର ବିଶ୍ୱଜିତ୍ ଦାସ ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା ଭାବେ ଉଭଟ ନାଟ୍ୟ ପରମ୍ପରାକୁ ସମ୍ମାନ ଜଣାଇ ନାଟକରେ ନାନାଦି ପରୀକ୍ଷା ନିରୀକ୍ଷା ଆରମ୍ଭ କରିଥିଲେ ମଧ୍ୟ ସେ ନାଟକର ଅମୂହାଁ ନାଗଫାଶରେ କେବେ ବି ଛନ୍ଦି ହୋଇ ରହି ଯାଇନାହାନ୍ତି । ତାଙ୍କ ନାଟକର ବ୍ୟାପ୍ତି ଓ ଦୀପ୍ତିର ତୁଳନା ନାହିଁ । ଛୋଟ ନାଟକ, ହାସ୍ୟ ରସାତ୍ମକ ନାଟକ ଠାରୁ ଆରମ୍ଭ କରି ପାରମ୍ପରିକ ସ୍ୱୟସମ୍ପୂର୍ଣ୍ଣ ନାଟକ, ଏକାଙ୍କିକା ଏବଂ ଭିନ୍ନ ସ୍ୱାଦର ମଞ୍ଚ ନାଟକ ରଚନା କରି ସେ ଯଶସ୍ୱୀ ହୋଇ ରହିଛନ୍ତି । ତାଙ୍କ ନାଟକ 'ନୂଆଜହ୍ନ', 'ଓଁ ଶ୍ରୀଶ୍ରୀ ପ୍ରଜାପତୟେ ନମଃ', 'ନିଜ ପ୍ରତିନିଧିଙ୍କ ଠାରୁ', 'ପ୍ରତାପଗଡ଼ରେ ଦି' ଦିନ' ଆଦି ପ୍ରତିଟି ନାଟ୍ୟସମ୍ଭାର କେବଳ ସାଫଲ୍ୟର ଶୀର୍ଷ ସୀମାରେ ପହଞ୍ଚି ନାହିଁ ନାଟ୍ୟସ୍ରଷ୍ଟା ବିଶ୍ୱଜିତ୍‌ଙ୍କୁ ଦେଇଛି ଅଶେଷ ଲୋକପ୍ରିୟତା ଓ କରତାଳିର ବିପୁଳ ଜୟଧ୍ୱନି ।

ଏହି ଅବସରରେ ବିଶ୍ୱଜିତ୍ ଦାସଙ୍କ ଅନ୍ୟତମ ଅମର ନାଟ୍ୟସମ୍ଭାର 'ନିଶିପଦ୍ମ' ସମ୍ପର୍କରେ କିଞ୍ଚିତ୍ ଆଲୋକପାତ କରାଯାଇପାରେ ।

## ବିଶ୍ୱଜିତ୍ ଦାସଙ୍କ ନାଟକ 'ନିଶିପଦ୍ମ'ର ଅଶରୀରୀ କ୍ଷୁଧା

'ନିଶିପଦ୍ମ' ବିଶ୍ୱଜିତ୍ ଦାସଙ୍କର ଏକ ଲୋକପ୍ରିୟ ନାଟକ, ଯାହାକି ୧୯୫୭ ମସିହାରେ ରଚିତ ହୋଇଥିଲେ ମଧ୍ୟ ଏହା ସବୁ ସମୟର ଦର୍ଶକଙ୍କ ନିମନ୍ତେ ଏକ ଆକର୍ଷଣୀୟ ତଥା ସଫଳ ନାଟ୍ୟସମ୍ଭାର ଭାବେ ମର୍ଯ୍ୟାଦା ଲାଭ କରିବାକୁ ସମର୍ଥ ହୋଇପାରିଛି । 'ନିଶିପଦ୍ମ' ନାଟକରେ ନାଟ୍ୟକାର ବିଶ୍ୱଜିତ୍ ସାମ୍ପ୍ରତିକ ସମାଜରେ ଭଦ୍ର ତଥା ସଭ୍ୟ ବୋଲାଉଥିବା ମଣିଷମାନଙ୍କର ପ୍ରକୃତ ମୁଖା ଖୋଲି ଦେଇଛନ୍ତି ଏବଂ ସେମାନଙ୍କର ପ୍ରକୃତ ସ୍ୱରୂପକୁ ଉନ୍ମୋଚନ କରି ଜୀବନର କେତୋଟି ଅନ୍ଧକାର ଦିଗକୁ ଜନସମକ୍ଷରେ ଆବିଷ୍କାର କରି ପ୍ରଦର୍ଶନ କରାଇ ପାରିଛନ୍ତି । ମଣିଷର କ୍ଷୁଧା ହୋଇଛି ଅଶରୀରୀ ଚରିତ୍ର । କେତେବେଳେ

ଉଦରର କ୍ଷୁଧା ମଣିଷକୁ ଡହଳବିକଳ କରାଇଛି ତ କେତେବେଳେ ଯୌନକ୍ଷୁଧା । କ୍ଷୁଧା ନିକଟରେ ଆଭିଜାତ୍ୟ, ପ୍ରତିପତ୍ତି, ପଦମର୍ଯ୍ୟାଦା ସବୁ ପଛକୁ ରହିଯାଇଛି । କ୍ଷୁଧା ନିମନ୍ତେ ମଣିଷ ନିମ୍ନଗାମୀ ହେବାକୁ ଟିକିଏ ବି ପଶ୍ଚାତ୍‌ପଦ ହୋଇନାହିଁ ।

'ନିଶିପଦ୍ମ' ନାଟକର କଥାବସ୍ତୁ ଅତ୍ୟନ୍ତ ସଂକ୍ଷିପ୍ତ, କିନ୍ତୁ ତା'ର ଭାବ ଗମ୍ଭୀର ବାର୍ତ୍ତା ଅତ୍ୟନ୍ତ ତୀକ୍ଷ୍ଣ ଓ ହୃଦୟସ୍ପର୍ଶୀ । ନାଟକର ମୁଖ୍ୟ କଥାବସ୍ତୁ ହେଲା ଏକ ଯାତ୍ରୀବାହୀ ବସ୍ ପାହାଡ଼ି, ଜଙ୍ଗଲୀ ପଥ ଦେଇ ଅତିକ୍ରମ କରୁଥିବାବେଳେ ଯାନ୍ତ୍ରିକ ତ୍ରୁଟି ହେତୁ ବସ୍‌ଟି ଅଚଳ ହୋଇଯାଇଛି । ପୂର୍ବାହ୍ନରୁ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଗାଡ଼ି ପଡ଼ି ରହିବା ଫଳରେ ନିକାଞ୍ଚନ ଅରଣ୍ୟ ପଥରେ କୌଣସି ଖାଦ୍ୟଦ୍ରବ୍ୟ ନ ପାଇ ଯାତ୍ରୀମାନେ କ୍ଷୁଧାରେ ଆତୁର ହୋଇଉଠିଛନ୍ତି । ଯାତ୍ରୀମାନଙ୍କ ମଧ୍ୟରେ ମୁଖ୍ୟତଃ ଥିଲେ ରାଜେନ୍ଦ୍ର ପଟ୍ଟନାୟକ ଜଣେ ଜମିଦାର ବଂଶୋଦ୍ଭବ, ମଧ୍ୟବୟସ୍କ ବ୍ୟକ୍ତି । ରାଜେନ୍ଦ୍ରଙ୍କ ଭଗ୍ନୀ- ଆଧୁନିକା, ଶିକ୍ଷିତା ରଞ୍ଜନା ଏବଂ ରାଜେନ୍ଦ୍ରଙ୍କ ଭାବି-ଭଗ୍ନିପତି- ଯୁବକ ଜିଓଲୋଜିଷ୍ଟ-ବିନାୟକ, (ରଞ୍ଜନାଙ୍କ ବାକ୍‌ଦତ୍ତ), ବିଶିଷ୍ଟ ବ୍ୟବସାୟୀ ନିରଞ୍ଜନ, ରାଜନୈତିକ ଯୁବନେତା-ପ୍ରକାଶ, ଚରଣ ଦାସ ବାବାଜୀ ଓ ଅଶିକ୍ଷିତା, ନିର୍ଲିପ୍ତା, ଅଯତ୍ନବର୍ଦ୍ଧିତା, ଶ୍ରମଜୀବୀ, ସରଳା, ପାନବାଲୀ- ଅପ୍‌ସରା । ଏସବୁ ଯାତ୍ରୀଙ୍କ ବ୍ୟତୀତ ଗାଡ଼ିର ଡ୍ରାଇଭର କରାମତ୍ ଖାଁ ଏବଂ କ୍ଲିନର୍ ଶଙ୍କର ମଧ୍ୟ ନାଟକର ଚରିତ୍ରଭୁକ୍ତ ।

ପୂର୍ବାହ୍ନରୁ ନିଶାର୍ଦ୍ଧ ପର୍ଯ୍ୟନ୍ତ ଗାଡ଼ି ଅଚଳ ହୋଇ ରହିଛି । ଏହି ସମୟ ମଧ୍ୟରେ ଯାତ୍ରୀମାନଙ୍କର ପାରସ୍ପରିକ ସଂଳାପରୁ ସେମାନଙ୍କର ଚାରିତ୍ରିକ ପରିଚୟ ମିଳିପାରିଛି । ସଭିଏଁ ନିଜ ନିଜର ଆତ୍ମବଡ଼ିମା ପ୍ରଦର୍ଶନପୂର୍ବକ ନିଜର ଗାମ୍ଭୀର୍ଯ୍ୟ ଦେଖାଇଛନ୍ତି ଏବଂ ଅପ୍‌ସରା ପାନବାଲୀ ପ୍ରତି ନାସିକା କୁଞ୍ଚନ କରିଛନ୍ତି । କିନ୍ତୁ ପରମୁହୂର୍ତ୍ତରେ କ୍ଷୁଧାର ତାଡ଼ନାରେ ସେହି ଅଶିକ୍ଷିତା ଅପ୍‌ସରା ହାତରୁ ତା' ପାଖରେ ଥିବା ପିଠା ଖାଇବାକୁ କେହି ବି ପଶ୍ଚାତ୍‌ପଦ୍ ହୋଇ ନାହାନ୍ତି । ଏଠାରେ ଉଦରର କ୍ଷୁଧାର ପ୍ରାବଲ୍ୟକୁ ଦେଖାଇଥିବାବେଳେ ଆଦର୍ଶର ଆହ୍ୱାନ ଦେଇଥିବା ରାଜନୈତିକ ନେତା ପ୍ରକାଶର ଯୌନକ୍ଷୁଧାକୁ ଅତ୍ୟନ୍ତ ନିଛକ ଭାବରେ ପ୍ରକଟିତ କରାଯାଇଛି । ସଭିଙ୍କ ସାମ୍ନାରେ ପାନବାଲୀ ଅପ୍‌ସରାକୁ ଦେବୀର ମର୍ଯ୍ୟାଦା ଜ୍ଞାପନ କରୁଥିବା ପ୍ରକାଶ ନିବିଡ଼ ଅରଣ୍ୟର ଅନ୍ଧକାର ମଧ୍ୟରେ ଯୌନମିଳନ ନିମନ୍ତେ ଆମନ୍ତ୍ରଣ କରି ପଦ୍ମ ପରି ପବିତ୍ରା-ଅପ୍‌ସରା ନିକଟରୁ ପ୍ରତ୍ୟାକ୍ଷିତା ହେବା ଫଳରେ ନିଜ ସ୍ୱରୂପର ପରିଚୟ ବିଜ୍ଞପିତ ହୋଇଯାଇଛି ।

ଏହିପରି ଏକ କ୍ଷୁଦ୍ର କଥାବସ୍ତୁକୁ ନେଇ ଏକ ବ୍ୟାପକ ଚିନ୍ତାଚେତନାର ନାଟକଟିଏ ରଚନା କରି ନାଟ୍ୟକାର ବିଶ୍ୱଜିତ୍ ଦାସ ପ୍ରକୃତରେ ନିଜ ପ୍ରଚଣ୍ଡ ପ୍ରତିଭାର ପରିଚୟ ପ୍ରତିପାଦନ

କରିଅଛନ୍ତି । ମଣିଷର ଅହଂକାର, ଜଟିଳ ମାନସିକତା ଏବଂ ସୁବିଧାବାଦୀ ବ୍ୟକ୍ତିତ୍ୱର ପରିଚୟ ପ୍ରକଟ କରିବା ସହିତ ମୁଖାପିନ୍ଧା ମଣିଷର ଛଳନା ଓ ଅମଣିଷ ପଣକୁ ମଧ୍ୟ ଅତ୍ୟନ୍ତ ଜୀବନ୍ତ ଭାବରେ ପ୍ରକଟିତ କରାଯାଇଛି । କ୍ଷୁଧା ନିକଟରେ କାହାର ନିସ୍ତାର ନାହିଁ । ନା ଜମିଦାର ରାଜେନ୍ଦ୍ର, ନା ନେତା ବୋଲାଉଥିବା ଲମ୍ପଟ ପ୍ରକାଶ? ସଭିଏଁ କ୍ଷୁଧାର ବଶବର୍ତ୍ତୀ ହୋଇ ନିମ୍ନଗାମୀ । ଏଠି ଜୀବନ ଜୀବିକାର ବ୍ୟତିକ୍ରମ ଏବଂ ଆତ୍ମସଂଜମ ଓ ସଚେତନତାର ଅଭାବରେ ମଣିଷର ମାନବୀୟ ମାଧୁର୍ଯ୍ୟ ଓ ମୂଲ୍ୟବୋଧର ହ୍ରାସ ପାଉଥିବାବେଳେ ପାନବାଲୀ-ଅପ୍ସରା ପରି ସରଳା ଅଶିକ୍ଷିତାର ଚରିତ୍ର ମାଧ୍ୟମରେ ନାଟ୍ୟକାର ନିର୍ମଳ ମମତ୍ୱବୋଧ, ସରଳ ଅମାୟିକପଣ ସହିତ ନିଜ ସତ୍‌ଚରିତ୍ରବତ୍ତାର ଦୃଷ୍ଟାନ୍ତ ଅବତାରଣା କରି ନାଟକର ମୂଲ୍ୟବୋଧକୁ ଉଚ୍ଚକୀତ କରିବା ସହିତ ଏକ ମହନୀୟ ବାର୍ତ୍ତା ପ୍ରଦାନ କରିବାରେ ସମର୍ଥ ହୋଇପାରିଛନ୍ତି ।

ତିନିଅଙ୍କ ବିଶିଷ୍ଟ ଏହି ନାଟକର ସଫଳ ସଂଯୋଜନା, ପ୍ରୟୋଗ ଓ ନିର୍ଦ୍ଧାରିତ ଗତି ଫଳରେ, ନାଟକ ଏକ ଯଥାର୍ଥ ଶୀର୍ଷରେ ପହଞ୍ଚିବା ସହିତ ନାଟକର ନାମକରଣ 'ନିଶିପଦ୍ମ' ଯଥାର୍ଥ ହୋଇଅଛି । ନାଟକର ସଂଳାପ ତୀକ୍ଷ୍ଣ ଓ ପାତ୍ରାଭିମୁଖୀ ହୋଇଥିବାବେଳେ ନାଟକରେ ସଂଘାତ ବା ଦ୍ୱନ୍ଦ୍ୱ ଯଥାରୀତିରେ ସଂଯୋଜିତ ହୋଇଅଛି । ନାଟକରେ ଅନ୍ତର୍ଦ୍ୱନ୍ଦ୍ୱର ଗତି ନାଟକକୁ ନାଟକୀୟ ଓ ପ୍ରଭାବଶାଳୀ କରିବାରେ ସମର୍ଥ ହୋଇପାରିଛି । ଚରିତ୍ର ଚିତ୍ରଣରେ ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ପାରଦର୍ଶିତାର ତୁଳନା ନାହିଁ । 'ରଞ୍ଜନା' ପରି ଆତ୍ମଗର୍ବିଣୀ ଚରିତ୍ରର ଯଥାର୍ଥ ଅଙ୍କନ ହୋଇଥିବାବେଳେ 'ଅପ୍ସରା' ପରି ସରଳା, ମମତାମୟୀ ଚରିତ୍ର ମଧ୍ୟ ଯଥାରୀତିରେ ଅଙ୍କିତ ହୋଇଅଛି । 'ପ୍ରକାଶ' ପରି ସ୍ଖଳିତ ଚରିତ୍ରର ଚିତ୍ରଣ ଏବଂ ବାବାଜୀ ଚରଣ ଦାସ ପରି ଅସ୍ଥିରମନା ଦୁର୍ବଳ ଚରିତ୍ରର ଅଙ୍କନ ବିଶ୍ୱଜିତ୍‌ଙ୍କ ଚରିତ୍ର ଚିତ୍ରଣ ଶୈଳୀ ଓ କୌଶଳର ବୈଶିଷ୍ଟ୍ୟ ପ୍ରତିପାଦନ କରେ ।

ବିଶ୍ୱଜିତ୍ ଦାସ ଥିଲେ ଆଧୁନିକ ନାଟ୍ୟ ରଚନାର ଏକ ସିଦ୍ଧହସ୍ତ କଳାକାର । ୧୯୫୭ ମସିହାରେ ରଚିତ ତାଙ୍କର ଏହି ନାଟକଟିକୁ ସେ ଯେପରି ଭାବେ ଗଢ଼ି ତୋଳିଛନ୍ତି ତାହା ଯେ ତାଙ୍କୁ ଚିରକାଳ ଯଶସ୍ୱୀ ଓ ଅମର କରି ରଖିବାରେ ସମର୍ଥ ହୋଇପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

## କ୍ଷୟିଷ୍ଣୁ ସମାଜ ବ୍ୟବସ୍ଥାର ପ୍ରତିଛବି : ବିଶ୍ୱଜିତ୍ ଦାସଙ୍କ 'ପ୍ରତାପଗଡ଼ରେ ଦି' ଦିନ'

କଟକର 'ସୃଜନୀ' ନାଟ୍ୟସଂସ୍ଥାର ଦ୍ୱିତୀୟ ନାଟକ ଭାବେ ସଗୌରବେ ବହୁ ରଜନୀ ଧରି ଅଭିନୀତ ନାଟକ ଥିଲା ବିଶ୍ୱଜିତ୍ ଦାସଙ୍କ ରଚିତ (ରୂପାନ୍ତର) 'ପ୍ରତାପଗଡ଼ରେ ଦି'ଦିନ' । 'ପ୍ରତାପଗଡ଼ରେ ଦି' ଦିନ' (୧୯୬୭) ବିଶ୍ୱଜିତ୍‌ଙ୍କର ସଂପୂର୍ଣ୍ଣ ମୌଳିକ ନାଟ୍ୟସୃଷ୍ଟି ନୁହେଁ ।

ଏହା ବିଶିଷ୍ଟ ଋଷୀୟ ନାଟ୍ୟକାର ନିକୋଲାଇ ଗୋଗୋଲ୍‌ଙ୍କ ସୃଷ୍ଟ ନାଟକ 'ଇନ୍‌ସପେକ୍ଟର ଜେନେରାଲ'ର ଛାୟାନୁବାଦ। ସରଳ ବ୍ୟଙ୍ଗ ଓ ସାବଲୀଳ ଭାଷାରେ ସମୃଦ୍ଧ ଏହି ନାଟ୍ୟରଚନାରେ ଦୁର୍ନୀତିଗ୍ରସ୍ତ ସମାଜର ଚିତ୍ରକୁ ଅତ୍ୟନ୍ତ ଚମତ୍କାରଭାବରେ ସହଜ ଶୈଳୀରେ ଚିତ୍ରାୟିତ କରାଯାଇଛି। ଦୃଶ୍ୟ ବିହୀନ ଚାରିଅଙ୍କ ବିଶିଷ୍ଟ ଏହି ନାଟକରେ କଥାବସ୍ତୁର ଚମତ୍କାରୀତା ସହିତ ଲଳିତ ହାସ୍ୟରସର ଅବତାରଣା କରାଯାଇଛି। ନାଟକର ପ୍ରାଣସ୍ପନ୍ଦନ ଋଷୀୟୋଦ୍ଭବ ହେଲେ ମଧ୍ୟ ଓଡ଼ିଶାର ଜଳବାୟୁ ତଥା ନିତ୍ୟ ନିୟତ ପରିବେଶରେ ଏହା ଅତ୍ୟନ୍ତ ମନୋଜ୍ଞ ପରିପାଟୀରେ ବିଶ୍ୱଜିତ୍‌ଙ୍କ ଲେଖନୀରେ ଗଢ଼ି ଉଠିଛି।

ବିଷୟବସ୍ତୁର ଉପସ୍ଥାପନା ଏପରି ଚାତୁର୍ଯ୍ୟପୂର୍ଣ୍ଣ ହୋଇଛି ଯାହା ଫଳରେ ଶେଷପର୍ଯ୍ୟନ୍ତ ନାଟକର ଉତ୍କଣ୍ଠା ରକ୍ଷା କରାଯିବା ସଙ୍ଗେସଙ୍ଗେ ଏକ ସଫଳ ତଥା ସରସ, କୌତୁହଳମୟ ବାତାବରଣ ସୃଷ୍ଟି କରିବାରେ ସମର୍ଥ ହୋଇପାରିଛି। ମାତ୍ର ଗୋଟିଏ ସେଟ୍‌ରେ ପ୍ରସ୍ତୁତ ଏହି ନାଟକର ଗାଂଭୀର୍ଯ୍ୟ ଯେପରି ସୁଦୂର ପ୍ରସାରୀ, ନାଟକର ବାର୍ତ୍ତା ଓ ନାଟକର ଦିଗଦିଗନ୍ତ ସେହିପରି ବାସ୍ତବ ଭାବାପନ୍ନ। ନାଟ୍ୟକାରଙ୍କ ଭାଷାରେ 'ପ୍ରତାପଗଡ଼ରେ ଦି'ଦିନ' ହେଉଛି ଏକ କ୍ଷୟିଷ୍ଣୁ ସମାଜ ବ୍ୟବସ୍ଥାର ପ୍ରତିଛବି। ବିଷୟବସ୍ତୁର ବାସ୍ତବତା ପ୍ରତିପାଦନ ଉଦ୍ଦେଶ୍ୟରେ ଯଦିଓ ନାଟକରେ ଏକ ନିର୍ଦ୍ଦିଷ୍ଟ ସମୟ ଓ କେତେକ ନିର୍ଦ୍ଦିଷ୍ଟ ଧରଣର ଚରିତ୍ର ତଥା ପରିବେଶର ଅବତାରଣା କରାଯାଇଛି, ତଥାପି ଏ ସମସ୍ତକୁ ଗୌଣ ବିଚାରି ନାଟକ-ନିହିତ ବାର୍ତ୍ତାକୁ ହିଁ ପ୍ରାଧାନ୍ୟ ଦେବାକୁ ହେବ।'

(କିଞ୍ଚିତ୍ ବକ୍ତବ୍ୟ - ବିଶ୍ୱଜିତ୍ ଦାସ, ୨୮।୨।୬୭, ପ୍ରତାପଗଡ଼ରେ ଦି'ଦିନ - ୧୯୬୭)

'ପ୍ରତାପଗଡ଼ରେ ଦି'ଦିନ' ବିଖ୍ୟାତ ଋଷୀୟ ନାଟ୍ୟକାର ଗୋଗୋଲ୍‌ଙ୍କ 'ଇନ୍‌ସ୍ପେକ୍ଟର ଜେନେରାଲ୍' ଅନୁସରଣରେ ରଚିତ ହୋଇଥିଲେ ମଧ୍ୟ ଦୁଇ ରଚନା ମଧ୍ୟରେ ସମୟ ବ୍ୟବଧାନ ଯଥେଷ୍ଟ ଅଧିକ। ଇନ୍‌ସ୍ପେକ୍ଟର ଜେନେରାଲ୍ ୧୮୩୯ରେ ରଚିତ ହୋଇଥିବାବେଳେ 'ପ୍ରତାପଗଡ଼ରେ ଦି'ଦିନ' ରଚିତ ହୋଇଛି ୧୯୬୫ରେ ଏବଂ ପ୍ରକାଶିତ ୧୯୬୭ ମସିହାରେ। ପରିବେଶ, ଚିତ୍ରଚରିତ୍ର ଋଷିଆ ଦେଶର ହୋଇ ମଧ୍ୟ ବିଶ୍ୱଜିତ୍‌ଙ୍କ ଲେଖନୀରେ ଓଡ଼ିଶାର ରୂପ ବୈଭବ ଗ୍ରହଣ କରି ବେଶ୍ ମହିମାମଣ୍ଡିତ ହୋଇପାରିଛି।

'ପ୍ରତାପଗଡ଼ରେ ଦି'ଦିନ'ର କଥାବସ୍ତୁ ଯେପରି ଉତ୍କଣ୍ଠାପୂର୍ଣ୍ଣ ସେହିପରି ହାସ୍ୟମୟ ଓ ବିଦ୍ରୂପାତ୍ମକ। ନାଟକର ପୃଷ୍ଠଭୂମିକୁ 'ପ୍ରତାପଗଡ଼' ନାମକ ଗଡ଼ଜାତକୁ ନିଆଯାଇଛି। ବ୍ରିଟିଶ୍ ଶାସନକାଳକୁ ନାଟକର ସମୟସୀମା ଭାବେ ଗ୍ରହଣ କରାଯାଇଛି। ତତ୍କାଳୀନ ସମୟରେ ରାଜା ରାଜ୍ୟର ଶାସନ ମୁଖ୍ୟ ହେଲେ ମଧ୍ୟ ବ୍ରିଟିଶ୍ ଶାସନରେ ପରିଚାଳିତ। ରାଜାଙ୍କ ଅନୁପସ୍ଥିତିରେ ଦେୱାନ ରାଜ୍ୟର ସର୍ବେସର୍ବା। ରାଜ୍ୟର ଶାସନକାର୍ଯ୍ୟ ତଦାରଖ ନିମନ୍ତେ ବ୍ରିଟିଶ୍

ଶାସନ ଦ୍ୱାରା ପଲିଟିକାଲ୍ ଏଜେଣ୍ଟ୍ ନିଯୁକ୍ତ । ତେଣୁ ରାଜା ଓ ଦେଓ୍ୱାନ୍‌ଙ୍କର ପଲିଟିକାଲ୍ ଏଜେଣ୍ଟଙ୍କ ପ୍ରତି ଥାଏ ପ୍ରବଳ ଭୟ । ସେମାନଙ୍କୁ ସନ୍ତୁଷ୍ଟ କରି ରାଜା ଓ ଦେଓ୍ୱାନ୍‌ମାନେ ରାଜ୍ୟରେ ଅନ୍ଧାରଃ ଶାସନ ଚଳାଇଥାନ୍ତି । ରାଜ୍ୟର ଅନ୍ୟାନ୍ୟ କର୍ମଚାରୀଗଣ ରାଜା ବା ଦେଓ୍ୱାନ୍‌ଙ୍କର ଆଜ୍ଞାବହ ।

ସେହି ପରିପ୍ରେକ୍ଷୀରେ ପ୍ରତାପଗଡ଼ର ଶାସନ ଦାୟିତ୍ୱ ନ୍ୟସ୍ତ - ଦେଓ୍ୱାନ୍ ସାହେବ - ଜନାର୍ଦ୍ଦନ ପଟ୍ଟଯୋଶୀଙ୍କ ଉପରେ । ଦେଓ୍ୱାନ୍ ଶ୍ରୀ ପଟ୍ଟଯୋଶୀଙ୍କ ଜୀବନଚର୍ଯ୍ୟା ସେହି ରାଜକୀୟ ଧାରାରେ ପରିଚାଳିତ । ସେ ରାତିରେ ସ୍ୱପ୍ନ ଦେଖନ୍ତି । ରାତିରେ କଳାରଂଗର ମୂଷାମାନେ ତାଙ୍କ ଚାରିପାଖରେ ଘୂରି ବୁଲନ୍ତି ଆଉ ଦିନରେ ତାଙ୍କ ଚାରିପଟେ ଘେରି ରହନ୍ତି ବିଶିଷ୍ଟ କର୍ମଚାରୀମାନେ । ସେ କର୍ମଚାରୀମାନେ ହେଲେ ଜଜ୍‌ସାହେବ୍ - ରାଧାଶ୍ୟାମ ଚୌଧୁରୀ, ସ୍ୱାସ୍ଥ୍ୟ ବିଭାଗର ମୁଖ୍ୟ ମାର୍କଣ୍ଡେୟ ପଟ୍ଟନାୟକ, ସ୍କୁଲ୍ ସୁପରିଟେଣ୍ଡେଣ୍ଟ୍ - ଗଜାନନ୍ଦ ବିଶ୍ୱାଳ, ପୋଷ୍ଟମାଷ୍ଟର ମାଧବାନନ୍ଦ ଓ ପୋଲିସ୍ ବିଭାଗର ମୁଖ୍ୟ ଇତ୍ୟାଦି । ପ୍ରତାପଗଡ଼ର ଏହି ତଥାକଥିତ ବିଶିଷ୍ଟ କର୍ମଚାରୀମାନେ ସମସ୍ତେ ନିଜନିଜର କର୍ତ୍ତବ୍ୟରେ ହେଳାକରି ବ୍ୟତିକ୍ରମ ଘଟାନ୍ତି । ଜଜ୍‌ସାହେବ କୋଟ୍ ରୁମ୍‌ରେ ପଶା ଖେଳନ୍ତି । ଯଥାରୀତିରେ ନ୍ୟାୟ ବିଚାର ନ କରି ବି 'ନ୍ୟାୟସାଗର' ଉପାଧି ପ୍ରାପ୍ତ ହୋଇଛନ୍ତି । ସ୍ୱାସ୍ଥ୍ୟ ବିଭାଗର ମୁଖ୍ୟ ଉଚିତ୍ ରୋଗ ଚିକିତ୍ସା ନ କରି ରୋଗୀର ମୃତ୍ୟୁଦ୍ୱାର ପରିଷ୍କାର କରିଦିଅନ୍ତି । ପୋଷ୍ଟମାଷ୍ଟର ମନିଅର୍ଡର ଟଙ୍କା ଆତ୍ମସାତ୍ କରନ୍ତି ଓ ଅନ୍ୟର ଚିଠି ଖୋଲି ପଢ଼ନ୍ତି । ସ୍କୁଲ୍ ସପୁରିଟେଣ୍ଡେଣ୍ଟ୍ - ଶିକ୍ଷାର ବିକାଶ ଦିଗରେ ସଂପୂର୍ଣ୍ଣ ଉଦାସୀନ ଥାଆନ୍ତି । ପୋଲିସ୍ ବିଭାଗର ମୁଖ୍ୟ ରାଜ୍ୟର କୌଣସି ଶୃଙ୍ଖଳା ପ୍ରତି ଧ୍ୟାନ ନ ଦେଇ ଦେଓ୍ୱାନ୍‌ଙ୍କ ଇଙ୍ଗିତକୁ କେବଳ ପାଳନ କରନ୍ତି । ଏତଦ୍‌ବ୍ୟତୀତ ରାଜ୍ୟର ବ୍ୟବସାୟୀମାନେ ଦେଓ୍ୱାନଙ୍କ ଦ୍ୱାରା ନିର୍ଯ୍ୟାତୀତ ଓ ଶୋଷିତ ହୋଇ ରହିଥାନ୍ତି । ଏହି ପ୍ରତାପଗଡ଼ରେ ସର୍ବତ୍ର ଦୁର୍ନୀତି, ଶୋଷଣ, କଷଣ, ନିର୍ଯାତନା ଓ ଯଥେଚ୍ଛାଚାରର ଆଧିକ୍ୟରେ ଶାସନ ବିପଦଯୁକ୍ତ ଥିବା ଜାଣି ପଲିଟିକାଲ୍ ଏଜେଣ୍ଟ୍ ପ୍ରତାପଗଡ଼କୁ ଆସୁଥିବା ସମ୍ବାଦ ଦେଓ୍ୱାନ୍ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ଚିନ୍ତାଗ୍ରସ୍ତ କରିପକାଇଛି । ତେଣୁ ସମସ୍ତେ ସଜାଗ ହୋଇ ନିଜନିଜର କର୍ମକୁ ଶୃଙ୍ଖଳିତ କରିବା ସଙ୍ଗେସଙ୍ଗେ ନିଜ ନିଜର ଦପ୍ତରକୁ ପରିଷ୍କାର ପରିଚ୍ଛନ୍ନ କରିବାକୁ ତତ୍ପର ହୋଇଉଠିଛନ୍ତି ।

ସମୟକ୍ରମେ ଆସି ପ୍ରତାପଗଡ଼ରେ ପହଞ୍ଚିଛନ୍ତି ଆନନ୍ଦ ରାୟ । ପ୍ରଥମେ ସେ ଆସି ଏକ ହୋଟେଲ୍‌ରେ ରହିଛନ୍ତି । ଦେଓ୍ୱାନ୍ ସାହେବ ସେ ସମ୍ବାଦ ପାଇ ଯାଇ ହୋଟେଲ୍‌ରୁ ତାଙ୍କୁ ଫାଛୋଟି ଆଣିଛନ୍ତି । ପ୍ରଥମେ ସେ ହସ୍‌ପିଟାଲ୍‌କୁ ଆସିଛନ୍ତି । ସେଠାରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଛି । ତା'ପରେ ସେ ଆସି ଦେଓ୍ୱାନ୍ ସାହେବଙ୍କ ଘରେ ରହିଛନ୍ତି । ପ୍ରତ୍ୟେକ

କର୍ମଚାରୀ ଆନନ୍ଦରାୟଙ୍କୁ ପଲିଟିକାଲ୍ ଏଜେଣ୍ଟ୍ ମନେକରି ସମ୍ମାନର ସହ ସାକ୍ଷାତ କରିଛନ୍ତି ଏବଂ ଆନନ୍ଦ ରାୟ ପ୍ରତ୍ୟେକଙ୍କଠାରୁ ଧାର ସୂତ୍ରରେ ଟଙ୍କା ଧାର ନେଇଛନ୍ତି । ପଲିଟିକାଲ୍ ଏଜେଣ୍ଟ୍‌ଙ୍କୁ ଖୁସି କରିବା ପାଇଁ ସମସ୍ତେ ନିଜକୁ କୃତକୃତ୍ୟ ମନେ କରିଛନ୍ତି । ବ୍ୟବସାୟୀମାନେ ଆସି ଦେୱାନ୍‌ଙ୍କ ଶୋଷଣ ବିରୁଦ୍ଧରେ ପଲିଟିକାଲ ଏଜେଣ୍ଟ୍‌ଙ୍କ ପାଖରେ ଅଭିଯୋଗ କରିଛନ୍ତି । ଆନନ୍ଦରାୟ ସେପରି ଅନୀତିକୁ ଯଥାରୀତିରେ ବୁଝିବାକୁ ସେମାନଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ଏବଂ ସେମାନଙ୍କଠାରୁ ଟଙ୍କା, ଚିନି ଆଦି ଆଦାୟ କରିଛନ୍ତି । କେବଳ ସେତିକି ନୁହେଁ, ଦେୱାନଙ୍କ ପତ୍ନୀଙ୍କୁ ପ୍ରଭାବିତ କରି ଦେୱାନଙ୍କ କନ୍ୟା ରତ୍ନାକୁ ବିବାହ କରିବା ନିମନ୍ତେ ଇଚ୍ଛା ପ୍ରକାଶ କରିଛନ୍ତି । ସେହି ପଲିଟିକାଲ୍ ଏଜେଣ୍ଟଙ୍କ ସହିତ କନ୍ୟାର ବିବାହ ହେବା ଆଶାରେ ଦେୱାନ୍ ଦମ୍ପତି ଆନନ୍ଦରେ ବିଭୋର ହୋଇ ଉଠିଛନ୍ତି । ଏହି ସମ୍ବାଦ ସମଗ୍ର ପ୍ରତାପଗଡ଼ରେ ପ୍ରଚାରିତ ହୋଇଯିବା ପରେ ଏକ ଉଲ୍ଲାସର ବନ୍ୟା ଖେଳିଯାଇଛି । କିନ୍ତୁ ଏହି ଅବସରରେ ପଲିଟିକାଲ୍ ଏଜେଣ୍ଟ୍‌ରୂପୀ ଆନନ୍ଦ ରାୟ ଏକ ଗୁରୁତର କାର୍ଯ୍ୟ ନିମନ୍ତେ ଦେୱାନଙ୍କୁ କହି ହଠାତ୍ ଦୁଇଦିନ ପାଇଁ ଚାଲିଯାଇଛନ୍ତି । ଇତି ଅବସରରେ ପୋଷ୍ଟମାଷ୍ଟର ଆନନ୍ଦ ରାୟଙ୍କ ଚିଠିଟି ଉଦ୍ଧାରକରି ଚିଠି ପାଠକରି ସେ ପଲିଟିକାଲ୍ ଏଜେଣ୍ଟ୍‌ଟି ଯେ ପ୍ରକୃତ ଏଜେଣ୍ଟ୍ ନୁହେଁ, ସେ ଏକ ଛଦ୍ମବେଶୀ ତଥା ପ୍ରକାଣ୍ଡ ପ୍ରତାରକ – ଘୋଷଣା କରନ୍ତେ ସମସ୍ତେ ସ୍ତବ୍ଧ ହୋଇଯାଇଛନ୍ତି । ସେ ଚିଠିରେ ଦେୱାନ୍, ଜଜ୍, ଡାକ୍ତର, ପୋଷ୍ଟମାଷ୍ଟର, ସ୍କୁଲ ଇନିସ୍ପେକ୍ଟର ସମସ୍ତଙ୍କ ଦୁର୍ନୀତି ଏବଂ ଚାରିତ୍ରିକ ସ୍ଖଳନ ସଂପର୍କରେ ଉଲ୍ଲେଖ ହୋଇଥିବା ଜାଣି ସମସ୍ତେ ତାଙ୍କ ଉପରେ ଭୀଷଣ କ୍ଷୁବ୍ଧ ହୋଇଉଠିଛନ୍ତି । ଠିକ୍ ସେତିକିବେଳେ ପଲିଟିକାଲ୍ ଏଜେଣ୍ଟ୍ ରୂପୀ ଆନନ୍ଦ ରାୟ ପୁନର୍ବାର ଉଭାହୋଇ ନିଜର ମାୟାପୂର୍ଣ୍ଣ କଥା ଚାତୁର୍ଯ୍ୟରେ ସମସ୍ତଙ୍କୁ ବଶୀଭୂତ କରିଦେଇଛି । ଦେୱାନ୍ କନ୍ୟାଙ୍କ ସହିତ ତାଙ୍କର ବିବାହ ପୂର୍ବରୁ ନିର୍ବନ୍ଧ ହେବା ନିମନ୍ତେ ସମସ୍ତେ ତତ୍ପର ହୋଇଉଠିଛନ୍ତି । ଏହି ସମୟରେ ପ୍ରକୃତ ପଲିଟିକାଲ୍ ଏଜେଣ୍ଟ୍ ଆସି ପହଞ୍ଚି ଯେତେ ନିଜର ପରିଚୟ ପ୍ରଦାନ କଲେ ବି ଧୂର୍ତ୍ତ ଆନନ୍ଦ ରାୟ ତାକୁ ଠକ, ପ୍ରତାରକ ସାବ୍ୟସ୍ତ କରି ଆରେଷ୍ଟ୍ କରାଇଦେଇଛି । ସେହି ସମୟରେ ସୁଯୋଗଦେଖି ଆନନ୍ଦ ରାୟ ସେଠାରୁ ଖସି ଚାଲିଯାଇଛି । ତାକୁ ଖୋଜି ନ ପାଇ ସମସ୍ତେ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଛନ୍ତି । ତେଣୁ ସମଗ୍ର ପରିବେଶରେ ଏକ ଅବସାଦଭରା ଅସହାୟତା ଖେଳିଯାଇଛି ।

ଆନନ୍ଦ ରାୟ ଓରଫ୍ ମିଛ, ଭଣ୍ଡ ପଲିଟିକାଲ୍ ଏଜେଣ୍ଟ୍‌ର ପ୍ରତାପଗଡ଼ରେ ମାତ୍ର ଦୁଇ ଦିନର ରହଣି ମଧ୍ୟରେ କାହିଁ କେତେ ନାଟକୀୟ ଘଟଣା ଘଟିଯାଇଛି । ଅର୍ଥର ମୋହ କିପରି ପ୍ରତ୍ୟେକଙ୍କୁ ମୋହଗ୍ରସ୍ତ କରିପାରେ ଏବଂ ଖୋଦ୍ ଦେୱାନ୍‌ଙ୍କ ଠାରୁ ଆରମ୍ଭ କରି ଜଜ୍, ଡାକ୍ତର, ପୋଷ୍ଟମାଷ୍ଟର, ସ୍କୁଲ ସୁପରିଟେଣ୍ଡେଣ୍ଟ୍ ଆଦି ସମସ୍ତଙ୍କୁ ଦୁର୍ନୀତିଗ୍ରସ୍ତ ସଜାଇପାରେ ତାହାର ଏକ ସଜୀବ·ସ୍ୱର ଅନୁରଣିତ ହୋଇଛି । ଗଣତାନ୍ତ୍ରିକ ଭାରତ ବର୍ଷରେ କିପରି ସାଧାରଣ ଜନତା

ଅବହେଳିତ ଏବଂ ପଦପଦାଧିକାରୀମାନେ କିପରି ସ୍ୱେଚ୍ଛାଚାରୀ ଓ ଦୁର୍ନୀତିଗ୍ରସ୍ତ ତାହା 'ପ୍ରତାପଗଡ଼ରେ ଦି' ଦିନ' ନାଟକରେ ବେଶ୍ ମଂଜୁଳ ପରିପାଟୀରେ ବର୍ଣ୍ଣିତ ହୋଇଅଛି ।

ନାଟ୍ୟକାର ବିଶ୍ୱଜିତଙ୍କ ନାଟକର ସଂଳାପ ବେଶ୍ ତୀକ୍ଷ୍ଣ ଏବଂ ପାତ୍ରାଭିମୁଖୀ । 'ପ୍ରତାପଗଡ଼ରେ ଦି'ଦିନ'ର ସଂଳାପ ଗୁଡ଼ିକରୁ କେତେକ ଦୀର୍ଘ ହୋଇଥିଲେ ହେଁ ସଂଳାପଗୁଡ଼ିକ ବେଶ୍ ମନଛୁଆଁ ହୋଇଅଛି ।

ନାଟକର ପ୍ରତିଟି ଚରିତ୍ର ପ୍ରୟୋଜନ ଅନୁସାରେ ବେଶ୍ ସୁନ୍ଦରଭାବେ ଚିତ୍ରିତ । ନାଟକରେ କୌଣସି ନୃତ୍ୟଗୀତର ସଂଯୋଜନା ନ ଥାଇ ମଧ୍ୟ ନାଟକର ଭାବକଳ୍ପ ଏପରି ଚିତ୍ତସ୍ପର୍ଶୀ ହୋଇପାରିଛି ଯେ ଦର୍ଶକଙ୍କୁ ନାଟକର ଶୀର୍ଷବିନ୍ଦୁ ପର୍ଯ୍ୟନ୍ତ ଅଭିଭୂତ କରି ରଖିବାରେ ସାମର୍ଥ୍ୟ ଅର୍ଜନ କରିଅଛି । ଏହି ଆଲୋଚ୍ୟ ନାଟକ 'ପ୍ରତାପଗଡ଼ରେ ଦି' ଦିନ' ଏକ ଅନୁସୃତ ନାଟକ ହୋଇଥିଲେ ମଧ୍ୟ ଏହା ଆମ ଭାରତବର୍ଷର ସାଂପ୍ରତିକ ସାମାଜିକ ଚିତ୍ର ବହନ କରେ । ତେଣୁ ନାଟକ 'ପ୍ରତାପଗଡ଼ରେ ଦି'ଦିନ'ରେ ଯେ ସର୍ବକାଳୀନ ମୂଲ୍ୟବୋଧ ରହିଛି, ଏଥିରେ ସନ୍ଦେହ ନାହିଁ ।

## 'ନିଜ ପ୍ରତିନିଧିଙ୍କ ଠାରୁ' ରେ ସାମ୍ବାଦିକ ଜୀବନର ଚିତ୍ର ଚରିତ୍ର

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ରଚିତ ନାଟକ 'ନିଜ ପ୍ରତିନିଧିଙ୍କ ଠାରୁ' (୧୯୬୮) ଜଣେ ସାମ୍ବାଦିକର ଜୀବନ ଜୀବିକା ସହିତ ତା'ର ପତ୍ନୀ, ପରିବାର ଏବଂ ତା ବଳୟରେ ଦେଖା ଦେଇଥିବା ସମସ୍ୟା ସହିତ ସାମାଜିକ ବୈଷମ୍ୟର ଘନଘଟାକୁ ନେଇ ରଚିତ । ଓଡ଼ିଶାର ଅନ୍ୟତମ ବିଶିଷ୍ଟ ନାଟ୍ୟସମାଲୋଚକ ଡକ୍ଟର ହେମନ୍ତ କୁମାର ଦାସ, ବିଶ୍ୱଜିତ୍ ଦାସଙ୍କ 'ନିଜ ପ୍ରତିନିଧିଙ୍କଠାରୁ' ସାମ୍ବାଦିକର ଜୀବନାଲେଖ୍ୟକୁ ନେଇ ପ୍ରଥମ ରଚିତ ନାଟକ ବୋଲି ମତ ଦିଅନ୍ତି । ସେ କହନ୍ତି- 'ସାମ୍ବାଦିକକୁ ନାୟକ କରି ନାଟକ ରଚନା ପାଇଁ ଏହା ହେଉଛି ପ୍ରଥମ ଉଦ୍ୟମ'

(ନାଟ୍ୟକାର ବିଶ୍ୱଜିତ୍, ହେମନ୍ତ କୁମାର ଦାସ, ବିଶ୍ୱଜିତ୍ ନାଟ୍ୟବଳୟ, ସଂପାଦନା, ଡ. ଉପେନ୍ଦ୍ର ପ୍ରସାଦ ନାୟକ, ପୃ-୧୪)

ଏହି ସାମ୍ବାଦିକ ଜୀବନକୁ ନେଇ ନାଟକ ସଂପର୍କରେ ଭାବିଲାବେଳେ ନାଟ୍ୟକାର ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକଙ୍କ ରଚିତ ନାଟକ 'ଅନୁବନ୍ଧନ' ସ୍ମରଣକୁ ଆସେ । ଜଣେ ସାମ୍ବାଦିକ ଜୀବନର ମନନଶୀଳତା, ସ୍ୱଚ୍ଛତା ତଥା ଅର୍ନ୍ତବେଦନା ତାଙ୍କ ରଚିତ ନାଟକ 'ଅନୁବନ୍ଧନ'ରେ ବେଶ୍ ସୁନ୍ଦରଭାବେ ଚିତ୍ରିତ ହୋଇଅଛି ।

ବିଶ୍ୱଜିତ୍ ଦାସଙ୍କର ଏହି ନାଟକ 'ନିଜ ପ୍ରତିନିଧିଙ୍କଠାରୁ' ଭୁବନେଶ୍ୱରର ସୌଖୀନ୍ ନାଟ୍ୟସଂସ୍ଥା 'ରୂପକାର' ଦ୍ୱାରା ପ୍ରଥମେ ଅଭିନୀତ ହୋଇଥିଲା ନିଜ ନିର୍ଦ୍ଦେଶନାରେ । ଏହା ଦୃଶ୍ୟବିହୀନ ତିନି ଅଙ୍କ ବିଶିଷ୍ଟ ଏକ ନାଟକ । ଜଣେ ସମ୍ବାଦପତ୍ର ପ୍ରତିନିଧି ବା ସାମ୍ବାଦିକର ଜୀବନ ଯନ୍ତଣାର ଚିତ୍ର ଏଥିରେ ନିଛକ ପରିପାଟୀରେ ଚିତ୍ରିତ । ଜଣେ ସଚ୍ଚୋଟ କର୍ତ୍ତବ୍ୟନିଷ୍ଠ ନୀତିବାନ୍ ସାମ୍ବାଦିକ କିପରି ନିଜର କର୍ତ୍ତବ୍ୟ ଓ ଦାୟିତ୍ୱକୁ ଅଧିକ ଗୁରୁତ୍ୱ ଦେଇ ନିଜ ପତ୍ନୀ ପରିବାରକୁ ଅବହେଳା କରି ସେମାନଙ୍କ ଦ୍ୱାରା ଅଭିଯୁକ୍ତ ହୋଇଛନ୍ତି, ତାହାର ଏକ ଜୀବନ୍ତ ଚିତ୍ର ଅଙ୍କନ କରିଛନ୍ତି ନାଟ୍ୟକାର ବିଶ୍ୱଜିତ୍ 'ନିଜ ପ୍ରତିନିଧିଙ୍କଠାରୁ' ନାଟକରେ ।

ସାମ୍ବାଦିକ ଅଜୟ ନାଟକ 'ନିଜ ପ୍ରତିନିଧିଙ୍କଠାରୁ'ର ମୁଖ୍ୟ ନାୟକ ଓ ତାଙ୍କର ପତ୍ନୀ ଇନ୍ଦୁମତୀ ମୁଖ୍ୟ ନାୟିକା । ଦୁହିଁଙ୍କୁ କେନ୍ଦ୍ରକରି ନାଟକ ଗତିଶୀଳ ହୋଇଥିଲେ ମଧ୍ୟ ରାଜୁ, ଉପେନ୍ଦ୍ର, ସରୋଜ, ଯଦୁନାଥ ଓ ମହାଦେବ ଆଦି ଚରିତ୍ରମାନେ ନାଟକକୁ ଯଥାରୀତିରେ ବିକଶିତ କରିଛନ୍ତି ।

ସାମ୍ବାଦିକ ଅଜୟ ନିଜ ସାମ୍ବାଦିକତା ଜୀବନର ବ୍ୟସ୍ତତା ମଧ୍ୟରେ ନିଜ ପତ୍ନୀଙ୍କ ପାଇଁ, ପରିବାର ପାଇଁ ଯଥେଷ୍ଟ ସମୟ ଦେଇପାରି ନାହାନ୍ତି । ତେଣୁ ପତ୍ନୀ ଇନ୍ଦୁମତୀଙ୍କ ମନର ନିରବତା ଓ ଶୂନ୍ୟତା ପ୍ରକାଶ ପାଇଛି ବହୁ ସମୟରେ ଏବଂ ସେହି ପ୍ରତିକ୍ରିୟାର ଫଳସ୍ୱରୂପ ସେ ଅଜୟଙ୍କୁ ଆକ୍ଷେପ କରି କହିଛନ୍ତି - 'ତୁମେ ମଣିଷ ନୁହଁ, ତମ ଦିହରେ ଜୀବନ ନାହିଁ । ତମେ ମେସିନ୍' ।

ସନ୍ତାନହୀନା ଇନ୍ଦୁମତୀ ବ୍ୟର୍ଥ ମାତୃତ୍ୱରେ ପ୍ରପୀଡ଼ିତା ହୋଇ ଗଭୀର ଅର୍ନ୍ତଦାହ ମଧ୍ୟରେ ଜୀବନ ବିତାଉଥିଲେ ମଧ୍ୟ ନିଜକୁ ଏକ ସହଜ ନୀରବିତ ବଳୟ ମଧ୍ୟରେ ଗତିକରି ଚାଲିଛନ୍ତି । ଅଖଣ୍ଡ ଶୂନ୍ୟତା ଓ ମାତୃତ୍ୱର ବିଳାପକୁ ସାମୟିକ ପ୍ରଶମିତ କରିବା ନିମନ୍ତେ ସେ ପଡ଼ୋଶୀ ବହୁ ସନ୍ତାନର ଜନକ ଯଦୁନାଥଙ୍କ ସନ୍ତାନ ବାବ୍‌ଲୁକୁ ବାତ୍ସଲ୍ୟ ମମତା ଦେଇ ଆପଣେଇବାକୁ ହାତ ପାତିଛନ୍ତି ।

ସମସ୍ୟା ସେଇଥିରେ ଶେଷ ହୋଇନାହିଁ । ବହୁ କୁଟୁମ୍ବୀ ପରିବାରର କର୍ତ୍ତା ଯଦୁନାଥ ସମୟ ଚକ୍ରରେ ଅଫିସ୍‌ରୁ ମାତ୍ର କେତେଦିସ୍ତା କାଗଜ ଚୋରିକରି ଚାକିରିରୁ ନିଲମ୍ବିତ ହୋଇଛନ୍ତି । ଏ ଦିଗରେ ସେ ଅଜୟଠାରୁ ସାହାଯ୍ୟ ଆଶା କରିଥିଲେ ମଧ୍ୟ ନୀତିନିଷ୍ଠ ଅଜୟ ଏପରି ଅନ୍ୟାୟ, ଅନୀତି କାର୍ଯ୍ୟରେ କୌଣସି ସାହାଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ବୋଲି ମୁହେଁ ମୁହେଁ ଜଣାଇ ଦେଇଛନ୍ତି । ଯଦୁନାଥ ନିରାଶ ହୋଇ ଫେରିଛନ୍ତି । ବାବ୍‌ଲୁ ଜ୍ୱରାକ୍ରାନ୍ତ ହୋଇ ଘରେ ପଡ଼ିଛି । ଯଦୁନାଥ ବାବ୍‌ଲୁର ଉପଯୁକ୍ତ ଚିକିତ୍ସା କରିପାରୁ ନାହାନ୍ତି । ଫଳରେ ବାବ୍‌ଲୁର ମୃତ୍ୟୁ ହୋଇଛି । ବାବ୍‌ଲୁ ଜ୍ୱରାକ୍ରାନ୍ତ ବୋଲି ଇନ୍ଦୁମତୀ ପ୍ରଥମେ ଜାଣିପାରି

ନାହାନ୍ତି । କିନ୍ତୁ ଶେଷ ମୁହୂର୍ତ୍ତରେ ବାବ୍ଲୁର ମୃତ୍ୟୁ ସମ୍ବାଦପାଇ ସେ ଖୁବ୍ ଅଧୀରା ହୋଇପଡ଼ିଛନ୍ତି । ସୁପ୍ତ ମାତୃତ୍ୱ ତାଙ୍କର ବିଳପି ଉଠିଛି । ଏଥିନିମନ୍ତେ ଅଜୟଙ୍କୁ ବହୁଭାବରେ ଦୋଷାରୋପ କରିଛନ୍ତି । ଅଜୟଙ୍କ ସାନଭାଇ ରାଜୁ ପରିସ୍ଥିତିକୁ ଲଘୁ କରିବା ନିମନ୍ତେ ସଦା ସର୍ବଦା ତାର ଭାଉଜ ଇନ୍ଦୁମତୀଙ୍କ ମନତୋଷ ପାଇଁ ଉଦ୍ୟମ କରି ମଧ ସଫଳ ହୋଇପାରିନାହାନ୍ତି ।

ଏଣେ ଅର୍ଥଲୋଭୀ ଦୁର୍ନୀତିଗ୍ରସ୍ତ ଧୂର୍ତ୍ତ ବ୍ୟବସାୟୀ ଉପେନ୍ଦ୍ର ନୀତିନିଷ୍ଠ ଆଦଶବାନ୍ ସାମ୍ବାଦିକ ଅଜୟଙ୍କୁ ପ୍ରତାରଣା କରି ତାଙ୍କ ସମ୍ବାଦପତ୍ରରେ ନିଜ ଲେଖା ପ୍ରକାଶ କରାଇ ଚକ୍ରାନ୍ତ କରି ତିନିକୋଟି ଟଙ୍କାର ବ୍ୟବସାୟ କରିବାରେ ସକ୍ଷମ ହୋଇପାରିଛି । ପୁରୁଣା ଅଚଳ ପାଣିପମ୍ପ ସରକାରଙ୍କୁ ବିକ୍ରୟ କରି ସେ ତିନିକୋଟି ଟଙ୍କାର ବ୍ୟବସାୟ କରି ସଫଳ ହୋଇଛି ଏବଂ ଅଜୟଙ୍କୁ ଖୁସି କରିବା ନିମନ୍ତେ ଅଜୟଙ୍କ ପତ୍ନୀ ଇନ୍ଦୁମତୀଙ୍କ ଜନ୍ମଦିନରେ ଦାମୀ ସୁନାହାର ଉପହାର ଆଣି ଦିଅନ୍ତେ, ଅଜୟ ତା'ର ଧୂର୍ତ୍ତାମୀ ଓ ମତ୍‌ଲବୀ ପଣକୁ ଚିହ୍ନିପାରି ତା'ର ଉପହାର ଗ୍ରହଣ ନ କରି ତା'ର ଧୂର୍ତ୍ତପଣ ପାଇଁ ଦୋଷାରୋପ କରିଛି । ବାବ୍ଲୁର ମୃତ୍ୟୁରେ ମ୍ରିୟମାଣ ହୋଇ ଇନ୍ଦୁମତୀ ଅଜୟକୁ ଦୋଷାରୋପ୍ କରିଛନ୍ତି ତୀକ୍ଷ୍ଣ ଭାବରେ । ନାଟ୍ୟକାରଙ୍କ ଭାଷାରେ ନାଟକର ଶେଷ ସଂଳାପ, ଇନ୍ଦୁମତୀ ଓ ଅଜୟଙ୍କ ଉକ୍ତିପ୍ରତ୍ୟୁକ୍ତି ଖୁବ୍ ମାର୍ମିକ ହେବା ସଙ୍ଗେସଙ୍ଗେ ନାଟକର ଉତ୍କର୍ଷ ପ୍ରତିପାଦନ କରିବାରେ ସକ୍ଷମ ହୋଇପାରିଛି । ଯଥା :-

ଇନ୍ଦୁ – ହେଲା ତ ? ତମ ମନ ଶାନ୍ତି ହେଲା ତ ? ଆଉ ଏଘରକୁ ବାବ୍ଲୁ ଆସିବ ନାହିଁ । ତମର କିଛି ଚିନ୍ତାନାହିଁ । ଲେଖ, ତମେ ଶାନ୍ତିରେ ବସି ତମର ନ୍ୟୁଜ୍ ଲେଖ ।

ଅଜୟ – (କଣ୍ଠରୁଦ୍ଧ ଅବସ୍ଥାରେ) ମୁଁ –

ଇନ୍ଦୁ – ହଁ, ତମେ । କ'ଣ କରିପାରିଲ ତମେ ? ସମସ୍ତଙ୍କ ପାଇଁ ବାହାରିଥିଲ, କାହାରି ପାଇଁ କିଛି କରିପାରିଲ ନାହିଁ । ତମେ ମଣିଷ ନୁହଁ, ତମ ଦିହରେ ଜୀବନ ନାହିଁ, ତମେ ମେସିନ୍ । (ଉତ୍ତେଜନାରେ ଦ୍ରୁତଗତିରେ ଭିତରକୁ ଚାଲିଗଲା ।)

ଅଜୟ – ଇଏ କ'ଣ ? ମୋ ହାତଗୋଡ଼ ଏମିତି ଥରୁଛି କାହିଁକି ? ମୁଁ କ'ଣ କରିଛି ? ମୁଁ ତ କିଛି କରିନାହିଁ । ନା, ନା, ମୁଁତ କିଛି କରିନାହିଁ । ମୁଁ ତ ଦୁର୍ନୀତି, ଅନ୍ୟାୟ, ଅବିଚାର ବିରୁଦ୍ଧରେ ..... ତେବେ ମୋ ହାତଗୋଡ଼ ଏମିତି ଥରୁଛି କାହିଁକି ?

ଏହାପରେ ମଞ୍ଚ ଅନ୍ଧାର ହୋଇଛି ଏବଂ ନାଟକର ପରିସମାପ୍ତି ଘଟିଛି ।

ସମଗ୍ର ନାଟକରେ, ମୁଖ୍ୟ ନାୟକ ଅଜୟ ଓ ମୁଖ୍ୟ ନାୟିକା ଇନ୍ଦୁମତୀ ଚରିତ୍ରର ଅନ୍ତର୍ଦ୍ୱନ୍ଦ୍ୱ ନାଟକକୁ ଉଷ୍ମ କରିବା ସଙ୍ଗେ ସଙ୍ଗେ ପ୍ରକଟିତ କରିଛି ନିଆରା ଜୀବନ ଜୀଜ୍ଞାସା । ନୀତିନିଷ୍ଠ ସାମ୍ବାଦିକ ଅଜୟଙ୍କ ଉର୍ଦ୍ଧ୍ୱଗାମୀ ଜୀବନ ଦର୍ଶନ, ସାଂପ୍ରତିକ ଅବକ୍ଷୟଗ୍ରସ୍ତ ସମାଜ

ବ୍ୟବସ୍ଥାରେ ସାର୍ଥକତାର ଚୂଡ଼ାକୁ ଛୁଇଁବାରେ ସମର୍ଥ ହୋଇ ପାରିନାହିଁ । ଷଡଯନ୍ତକାରୀ ମଣିଷର ଚକ୍ରାନ୍ତ ଓ ଧୂର୍ତ୍ତପଣ ସରଳ ଜୀବନବୋଧକୁ କୁଠାରଘାତ କରିଛି । ତହିଁରେ ଅଜୟ ପରି ଶୁଭକାମୀ ମଣିଷର ସକଳ ସ୍ୱପ୍ନ. ଆଶା, ନୀତିନିଷ୍ଠତା ଓ ସାଧୁତା ଭାଙ୍ଗି ଚୁରମାର୍ ହୋଇଯାଇଛି । ଦୁଷ୍ଟ ମଣିଷର ଛଳନା, ପ୍ରତାରଣା ଓ ଚକ୍ରାନ୍ତ ନିକଟରେ ପରାଜୟ ସ୍ୱୀକାର କରିଛି ଅଜୟ ପରି ସଚ୍ଚୋଟ ନୀତିନିଷ୍ଠ ସାମ୍ୟାଦିକର ମହନୀୟତା ।

ବିଶ୍ୱଜିତ୍ ଦାସଙ୍କ ରଚିତ ନାଟକ 'ନିଜ ପ୍ରତିନିଧିଙ୍କଠାରୁ' ଏକ ପରୀକ୍ଷାଧର୍ମୀ ପରିଚ୍ଛନ୍ନ ସାମାଜିକ ନାଟକଟିଏ ଭାବେ ପରିଗଣିତ । ଏଥିରେ କରୁଣ ରସର ଧାରା ନିର୍ଗତ ହେବା ସଙ୍ଗେ ସଙ୍ଗେ ଉର୍ଦ୍ଧ୍ୱଗାମୀ ମାନବୀୟ ଚେତନାର ସ୍ଫୁରଣ ଘଟିଅଛି । ନାଟକରେ ଉନ୍ନତ ପ୍ରାତ୍ରାଭିମୁଖୀ ସଂଳାପ, ଯଥାର୍ଥ ଅନ୍ତର୍ଦ୍ୱନ୍ଦ୍ୱର ସଂଯୋଜନା ସାଙ୍ଗକୁ ନାଟକର ଉତ୍କଣ୍ଠା ଯଥାରୀତିରେ ରକ୍ଷା କରାଯାଇପାରିଛି । ଦୃଶ୍ୟ ବିଭାଜନକୁ ବାଦ୍‌ଦେଇ ତିନିଟି ଅଙ୍କରେ ବିଭକ୍ତ ଏହି ନାଟକରେ ସାଂଗୀତିକତାକୁ ନାଟ୍ୟକାର ବିଶେଷ ଦୃଷ୍ଟି ଦେଇ ନଥିଲେ ମଧ୍ୟ ନାଟକରେ ଥିବା ବିଭିନ୍ନ ପରିସର ମଧ୍ୟରେ ସଂଗୀତ ସଂଯୋଜନା କରାଯାଇ ନାଟକର ମନୋରଂଜନଧର୍ମିତା ରକ୍ଷା କରାଯାଇପାରେ । ନାଟକର ମୁଖ୍ୟ ନାୟକ ଅଜୟ, ମୁଖ୍ୟ ନାୟିକା ଇନ୍ଦୁମତୀଙ୍କ ଚରିତ୍ର ସହିତ ଅନ୍ୟାନ୍ୟ ପ୍ରତିଟି ଚରିତ୍ର ବେଶ୍ କମନୀୟ ପରିପାଟୀରେ ଯଥାରୀତିରେ ଅଙ୍କିତ ହୋଇଅଛନ୍ତି ।

## ନାଲିପାନ ରାଣୀ କଳାପାନ ଟୀକା

'ନାଲିପାନ ରାଣୀ କଳାପାନ ଟୀକା' ଓଡ଼ିଶାରେ ନବନାଟ୍ୟ ଆନ୍ଦୋଳନର ଆଦ୍ୟ ଗତିପଥରେ ଅତ୍ୟନ୍ତ ସଫଳତାର ସହ ମଞ୍ଚସ୍ଥ ହୋଇଥିଲା – 'ରୂପକାର' ନାଟ୍ୟସଂସ୍ଥାର ନାଟ୍ୟଶିଳ୍ପୀମାନଙ୍କ ଦ୍ୱାରା । ୧୯୬୮ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ଆୟୋଜିତ ନାଟକୋତ୍ସବରେ ଏହି ନାଟକ ଚାରୋଟି ଶ୍ରେଷ୍ଠ ପୁରସ୍କାର ଅର୍ଜନ କରିବାକୁ ସକ୍ଷମ ହୋଇଥିଲା ।

'ନାଲିପାନ ରାଣୀ କଳାପାନ ଟୀକା' ଏକ କ୍ଷୁଦ୍ର ଅଥଚ ବେଶ୍ ଗୁରୁତ୍ୱପୂର୍ଣ୍ଣ ସମସ୍ୟାକୁ ନେଇ ରଚିତ । 'ନାଲିପାନ ରାଣୀ କଳାପାନ ଟୀକା' ତାସ୍ ଖେଳର ଦୁଇଟି ତାସ୍‌ର ଚିହ୍ନିତ ନାମ । ସେହି ପ୍ରତୀକାତ୍ମକ ନାମକୁ ଶିରୋନାମ ଭାବେ ଗ୍ରହଣ କରି ଏବଂ ସେହି ପ୍ରତୀକର ମାଧ୍ୟମକୁ ଆଧାର କରି ଏକ ଚିତ୍ତସ୍ପର୍ଶୀ କ୍ଷୁଦ୍ର କଥାବସ୍ତୁର ଛତ୍ରେ ଛତ୍ରେ ଯଥାର୍ଥ ନାଟକୀୟତା ମଧ୍ୟରେ ଉନ୍ନତ ପାତ୍ରାଭିମୁଖୀ ସଂଳାପ ସଂଯୋଜନା ପୂର୍ବକ ଓ ଉପଯୁକ୍ତ ସଂଘାତ ସୃଷ୍ଟି କରି ନାଟକଟିକୁ ବେଶ୍ ଆକର୍ଷଣୀୟ ତଥା ପ୍ରଭାବଶାଳୀ କରିପାରିଛନ୍ତି ନାଟ୍ୟକାର ବିଶ୍ୱଜିତ୍ ଦାସ । ତେଣୁ ନାଟକଟି କେବଳ ଲୋକପ୍ରିୟତା ଅର୍ଜନ କରିନାହିଁ, ଏକ ଯୁଗାନ୍ତକାରୀ ଓଡ଼ିଆ ନାଟକ ଭାବେ ପରିଗଣିତ ହୋଇଅଛି ।

ଏହି ନାଟକଟି ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ନାଟକୋତ୍ସବରେ ଅଭିନୀତ ହୋଇ ଚାରିଚାରିଟି ପୁରସ୍କାର ହାସଲ କଲାପରେ ଏହା ସେତେବେଳେ ବେଶ୍ ଚହଳ ପକାଇଥିଲା । ବରେନ୍ଦ୍ର କୃଷ୍ଣ ଧଳ ଓ ଜଗନ୍ନାଥ ମହାପାତ୍ରଙ୍କ ତତ୍ତ୍ୱାବଧାନରେ 'ରୂପକାର' ସଂସ୍ଥା ଦ୍ୱାରା ଆୟୋଜିତ ଏହି ନାଟକରେ ଶ୍ରେଷ୍ଠ ନିର୍ଦ୍ଦେଶନା ନିମନ୍ତେ ବିଶ୍ୱଜିତ୍ ଦାସ ପୁରସ୍କୃତ ହୋଇଥିବା ବେଳେ ସନ୍ଧ୍ୟା ମହାପାତ୍ର ଶ୍ରେଷ୍ଠ ଅଭିନେତ୍ରୀ ଓ ୰ଅଜିତ କର ଶ୍ରେଷ୍ଠ ଅଭିନେତା ରୂପେ ପୁରସ୍କୃତ ହୋଇଥିଲେ । କେବଳ ସଙ୍ଗୀତ ନାଟକ ଏକାଡେମୀର ନାଟକ ଉତ୍ସବ ନୁହେଁ, ପରବର୍ତ୍ତୀ ସମୟରେ ଏହି ନାଟକ ଓଡ଼ିଶାର ବହୁସ୍ଥାନରେ ଅଭିନୀତ ହୋଇ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଅଛି ।

କାଳକାଳ ଧରି ପତିର ମାନସିକ ଚାପ ପତ୍ନୀକୁ ତା'ର ସ୍ୱାଧୀକାରଠାରୁ ଦୂରେଇ ରଖିଛି ଏବଂ ପତ୍ନୀକୁ ସେଥି ନିମନ୍ତେ ସକଳ ଯାତନା ସହିବାକୁ ପଡ଼ିଛି । ସ୍ୱାମୀର ନିର୍ଦ୍ଦୟ ସ୍ୱାର୍ଥପରତାକୁ ମଥାପାତି ସହିନେବା ବ୍ୟତୀତ କିଛି ରାହା ପାଏ ନାହିଁ ପତ୍ନୀ । ନିଜର ପ୍ରକୃତ ଇଚ୍ଛା ବିରୁଦ୍ଧରେ ବି ସ୍ୱାମୀର ଖିଆଲକୁ ସହିବା ବ୍ୟତୀତ ତା'ର କିଛି ଚାରା ନ ଥାଏ ।

ସେହିଭଳି ଏକ ଭାବକଳ୍ପ ତଥା କଥାବସ୍ତୁର ଛତ୍ରେ ଛତ୍ରେ ଗଢ଼ିଉଠିଛି ନାଟକ 'ନାଲିପାନ ରାଣୀ କଳାପାନ ଟୀକା' । ଅବସରପ୍ରାପ୍ତ ଶିକ୍ଷକ ଭାବଗ୍ରାହୀ ନିଜର ପତ୍ନୀଙ୍କ ବିୟୋଗ ପରେ ଅତ୍ୟନ୍ତ ନିଷ୍ଠା ଓ ଯତ୍ନର ସହିତ ନିଜର ପୁତ୍ର ପ୍ରଫୁଲ୍ଲକୁ ଲାଳନ ପାଳନ କରି ଉଚ୍ଚଶିକ୍ଷିତ କରାଇଛନ୍ତି । ପ୍ରଫୁଲ୍ଲ ଜଣେ ଅଧ୍ୟାପକ ହୋଇଛି । ପ୍ରଫୁଲ୍ଲ ଶୈଳ ନାମ୍ନୀ ଏକ ଗ୍ରାମ୍ୟ ତରୁଣୀକୁ ବିବାହ କରିଛି । ଶୈଳ ଏକ ସୁନିପୁଣା ଗୃହିଣୀ ଭାବେ ପରିଗଣିତା । ସ୍ୱାମୀ ପ୍ରଫୁଲ୍ଲଙ୍କୁ ଅତ୍ୟନ୍ତ ଭଲପାଉଥିବାବେଳେ ରାଧାମାଧବଙ୍କ ଭକ୍ତିରେ ମଗ୍ନଥିବା ଶ୍ୱଶୁର ଭାବଗ୍ରାହୀଙ୍କୁ ସେବା ଓ ଭକ୍ତିରେ ବୁଡ଼ାଇ ରଖିଛି । ଅଧ୍ୟାପକ ପ୍ରଫୁଲ୍ଲ ମଧ ପତ୍ନୀ ଶୈଳର ସୌନ୍ଦର୍ଯ୍ୟରେ ଅତ୍ୟନ୍ତ ମୁଗ୍ଧ । ଏପରି ମୁଗ୍ଧ ଯେ ଶୈଳ ସନ୍ତାନବତୀ ହେଲେ ତା'ର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବାର ଆଶଙ୍କାରେ ସେ ନିଜର ପତ୍ନୀର ମାତୃତ୍ୱ ମଧ ଚାହିଁ ନାହିଁ ।

ଏ ପ୍ରକାର ଚାରିତ୍ରିକ ବୈଚିତ୍ର୍ୟ ପ୍ରଦର୍ଶନ କରି ନାଟ୍ୟକାର ବିଶ୍ୱଜିତ୍ ଦାସ ନାଟକର ଦ୍ୱନ୍ଦ୍ୱ ଓ ଉତ୍କଣ୍ଠାର ପରିବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ନାଟକକୁ ଗତିଶୀଳ କରି ରଖିବାକୁ ଚେଷ୍ଟା କରି ସଫଳ ହୋଇଛନ୍ତି । ଯେତେବେଳେ ରାଧାମାଧବଙ୍କ ଭକ୍ତିରେ ମଗ୍ନଥିବା ଭାବଗ୍ରାହୀ ଜ୍ୟୋତିଷ ଜଟାଧାରୀଠାରୁ ଜାଣିଛନ୍ତି ତାଙ୍କ ବୋହୂ ଶୈଳର ସନ୍ତାନ ପିତୃହନ୍ତା ହେବ । ସେହିଠାରୁ ଭକ୍ତ ଭାବଗ୍ରାହୀ ଶୈଳର ଆସନ୍ନ ମାତୃତ୍ୱକୁ ମଧ ଚାହିଁନାହାନ୍ତି । ପ୍ରଫୁଲ୍ଲ ଜ୍ୟୋତିଷର ଗଣନା ଜାଣିନାହାନ୍ତି । ସେ ଶୈଳର ସୌନ୍ଦର୍ଯ୍ୟ ଓ ସ୍ୱାସ୍ଥ୍ୟଭଙ୍ଗର ଆଶଙ୍କାରେ ଶୈଳର ଗର୍ଭପାତ ଚାହୁଁଥିବା ବେଳେ ଭାବଗ୍ରାହୀ ଜ୍ୟୋତିଷଙ୍କ ଚେତାବନୀରେ ବିବ୍ରତ ହୋଇ ଶୈଳର ଗର୍ଭପାତ ମଧ ପରୋକ୍ଷରେ କାମନା କରିଛନ୍ତି । ଶୈଳ ପ୍ରଫୁଲ୍ଲର ଗର୍ଭପାତ ପ୍ରସ୍ତାବରେ ବିବ୍ରତ ହୋଇ

ଶ୍ୱଶୁର ଭାବଗ୍ରାହୀଙ୍କ ନିକଟରେ ଆପତ୍ତି ଜଣାନ୍ତେ ଭାବଗ୍ରାହୀ ତା'ର ସମାଧାନ ପରିବର୍ତ୍ତେ ସ୍ୱାମୀର ଆଦେଶ ମାନିବା ସ୍ତ୍ରୀର କର୍ତ୍ତବ୍ୟ ବୋଲି ଉପଦେଶ ଶୁଣାଇଛନ୍ତି ।

ନାଟ୍ୟକାରଙ୍କ ଭାଷାରେ -

ଭାବଗ୍ରାହୀ - "ଧର୍ମକୁ ସାକ୍ଷୀ ରଖି ତୁ ତା'ର ହାତ ଧରିଛୁ ମା ! ସିଏ ତୋର ସ୍ୱାମୀ, ଭୁଲ୍ କରୁ, ଠିକ୍ କରୁ, ତା କଥା ମାନିବା ତୋର ଧର୍ମ, ତା ନ ହେଲେ ଭଗବାନ ଅସନ୍ତୁଷ୍ଟ ହେବେ । ପ୍ରଫୁଲ୍ଲର କଥା ତୁ ମାନିନେ ମା !"

ଭାବଗ୍ରାହୀଙ୍କର ଏ ପ୍ରକାର ପରାମର୍ଶରେ ଆହୁରି ଅଧିକ ମର୍ମାହତ ହୋଇଛି ଶୈଳ । କିନ୍ତୁ କିଂକର୍ତ୍ତବ୍ୟମୂଢ଼ ହୋଇ ପ୍ରଫୁଲ୍ଲଙ୍କ ନିର୍ଦ୍ଦେଶକୁ ମାନିବାକୁ ବାଧ ହୋଇଛି ।

ଏହି ନାଟକ 'ନାଲିପାନ ରାଣୀ କଳାପାନ ଟୀକା'ରେ ସୁକାନ୍ତ ଏକ ଉଜ୍ଜ୍ୱଳ ତଥା ନିର୍ମଳ ଚରିତ୍ର । ସୁକାନ୍ତ ଜଣେ ଡାକ୍ତର - ପ୍ରଫୁଲ୍ଲର ଅନ୍ତରଙ୍ଗ ବନ୍ଧୁ । ଛୁଟି କଟାଇବାକୁ ପ୍ରଫୁଲ୍ଲଙ୍କ ଘରକୁ ଆସି ଏପରି ଏକ ଅମାନୁଷିକ ସମସ୍ୟାର ମୁକସାକ୍ଷୀ ହୋଇଛି ସେ । କେବଳ ଡାକ୍ତର ଭାବରେ ନୁହେଁ ଜଣେ ନୀତିବାଦୀ ମଣିଷ ହିସାବରେ ପ୍ରଫୁଲ୍ଲ ଓ ତା'ର ପିତାଙ୍କର ଏ ପ୍ରକାର ମନୋଭାବକୁ ଆଦୌ ଗ୍ରହଣ କରିପାରି ନାହିଁ । ସେ ମ୍ରିୟମାଣ ହୋଇ ଶୈଳକୁ ସେ ସଂକଟରୁ ଉଦ୍ଧାର କରିବାକୁ ଚେଷ୍ଟାକରିଛି । ଗୋଟିଏ ନାରୀର ମାତୃତ୍ୱ ପ୍ରତି ସମ୍ମାନବୋଧ ଓ ଗର୍ଭପାତ କରିବାର ଅନୈତିକତାକୁ ସେ ସହଜରେ ଗ୍ରହଣ କରିପାରି ନାହିଁ । ବନ୍ଧୁ ପ୍ରଫୁଲ୍ଲ, ତା'ର ପିତା ଓ ତା'ର ପରିବାର ପ୍ରତି ଘୃଣାରେ ଭରିଯାଇଛି ସୁକାନ୍ତର ମନ ଓ ହୃଦୟ । ସେ ଆପ୍ରାଣ ଚେଷ୍ଟା କରିଛି ଶୈଳକୁ ଏ ସଂକଟରୁ ରକ୍ଷା କରିବାକୁ, କିନ୍ତୁ ପାରି ନାହିଁ । ସେ ଶୈଳକୁ ସେ ନର୍କପୁରୀରୁ ମୁକ୍ତି ଦେଇ ସଙ୍ଗରେ ନେଇଯିବାକୁ ଚାହିଁଲେ ବି ଶୈଳ କିପରି ବା ସ୍ୱାମୀ ଓ ପରିବାର ଛାଡ଼ି ଅନ୍ୟ ଏକ ପୁରୁଷ ସହିତ ଯାଇପାରିବ ? ସୁକାନ୍ତ ଅତ୍ୟନ୍ତ କ୍ଷୋଭର ସହିତ ପ୍ରଫୁଲ୍ଲକୁ କହିଛି - "ତୋ ପାଖରେ ମଣିଷ ଦେବତା ଠୁଁ ବଡ଼ ନା ? କିନ୍ତୁ ତୁ ନିଜେ ? ମଣିଷର ବଡ଼ ଶତ୍ରୁ ।"

ଡାକ୍ତର ସୁକାନ୍ତ ଚରିତ୍ର କେବଳ ବିଶ୍ୱଜିତ୍ ଦାସଙ୍କ ଲେଖନୀରେ ନିର୍ମଳ ତଥା ଏକ ଉଜ୍ଜ୍ୱଳ ଚରିତ୍ର ଭାବେ ବିକଶିତ ହୋଇନାହିଁ ବରଂ ନାଟକର ଗତିକୁ ବେଶ୍ ଭାବଗମ୍ଭୀର କରିଛି । ପ୍ରଫୁଲ୍ଲ ପରି ଉପଭୋଗଲିପ୍ସୁ ସ୍ୱାମୀ ଓ ଭାବଗ୍ରାହୀଙ୍କ ପରି ଜଣେ ଅନ୍ଧବିଶ୍ୱାସୀ ସମ୍ପନ୍ନ ପାରମ୍ପରିକ ଚରିତ୍ରକୁ କେବଳ ସୁକାନ୍ତ ମାଧ୍ୟମରେ ନାଟ୍ୟକାର-ଚେତାବନୀ ଦେଇ ନାଟକକୁ ବେଶ୍ ପ୍ରଭାବଶାଳୀ କରିବାକୁ ଚେଷ୍ଟା କରି ସଫଳ ହୋଇଛନ୍ତି ।

ନାଟକରେ ପ୍ରଫୁଲ୍ଲ ଓ ଭାବଗ୍ରାହୀ ଦୁଇଟିଯାକ ଅବିଚାରୀ, ନିଷ୍ଠୁର ତଥା ଦୁର୍ବଳ ଚରିତ୍ର ଭାବେ ଚିତ୍ରିତ ହୋଇଥିବାବେଳେ ସୁକାନ୍ତ ପରି ଆଦର୍ଶ ଏବଂ ନୀତିବାନ୍ ଚରିତ୍ର ସମଗ୍ର

ନାଟକଟିର ସନ୍ତ୍ରମତା ରକ୍ଷା କରିପାରିଛି । ନାଟକରେ ଶୈଳ ଏକ ସ୍ୱଚ୍ଛ, ସହଜ, ସରଳ ସୁନ୍ଦର ନାରୀ ଚରିତ୍ର ଭାବେ ଚିତ୍ରିତ ହୋଇଅଛି । ନାରୀ ଜୀବନର ଏକାନ୍ତ କାମନା - ମାତୃତ୍ୱକୁ ସେ ସ୍ୱାମୀ ଓ ପରିବାର ପାଇଁ ବଳି ଦେବାକୁ ବାଧ୍ୟ ହୋଇଛି । ସକଳ ଜଟିଳ ପରିସ୍ଥିତି ଓ ନିର୍ଯାତନାକୁ ମୁଣ୍ଡପାତି ସହିନେଇଛି ଅଥଚ ସକଳ ଯାତନା, ଅନ୍ତର୍ଦାହ ଓ ବୁକୁର କୋହକୁ ଚାପିରଖି ସେ ପାଷାଣୀଟିଏ ପାଲଟି ଯାଇଛି ଯେମିତି ।

ବିଶ୍ୱଜିତ୍ ଦାସଙ୍କର ଏହି ନାଟକ 'ନାଲିପାନ ରାଣୀ କଳାପାନ ଟୀକା'ର ଚରିତ୍ର ଚିତ୍ରଣ, ନାଟକୀୟତା ଓ ଦ୍ୱନ୍ଦ୍ୱ ବା ସଂଘାତ ଯେପରି ଭାବେ ଫୁଟି ଉଠିଛି ଏବଂ ନାଟକଟିକୁ ପ୍ରଭାବଶାଳୀ କରିବାକୁ ସମର୍ଥ ହୋଇପାରିଛି ଠିକ୍ ସେହିପରି ଆରମ୍ଭରୁ ଶେଷଯାଏ ପାତ୍ରାଭିମୁଖୀ ସଂଳାପମାନ ସଂଯୋଜିତ ହୋଇଛି ଏବଂ ଯଥାରୀତିରେ ନାଟକର ଉତ୍କଣ୍ଠା ରକ୍ଷା କରାଯାଇପାରିଛି ।

ନାଟକଟିଏ କେବଳ ଜନତାକୁ ମନୋରଞ୍ଜନ ଦିଏ ନାହିଁ । ମନୋରଞ୍ଜନ ସହିତ ନାଟ୍ୟକାର ନାଟକ ମାଧ୍ୟମରେ ଅନେକ ଦିଗ୍‌ଦର୍ଶନ ଦେଇଥାଏ । ବିଶ୍ୱଜିତ୍ ଦାସଙ୍କର ଏହି ନାଟକ 'ନାଲିପାନ ରାଣୀ କଳାପାନ ଟୀକା' ସେପରି ଭାବେ ଏକ ମହତ୍‌ବାର୍ତ୍ତା ପ୍ରଦାନ କରିଛି ।

ଅଯଥା ଉପଭୋଗଲିପ୍‌ସା, ଅନ୍ଧବିଶ୍ୱାସ, ଭାଗ୍ୟଭବିତବ୍ୟ ପ୍ରତି ଅଯଥା ଅହେତୁକ ଭୟରେ ମଣିଷ କିପରି ଅନ୍ୟାୟ ଅବିଚାର କରି ନିମ୍ନଗାମୀ ହୋଇପାରେ, ନିର୍ଦ୍ଦୟ ଭାବେ ନିଜ ପତ୍ନୀ, ନିଜ ବୋହୂ ସର୍ବୋପରି ସମାଜରେ ନାରୀର ଅଧିକାର, ସ୍ୱପ୍ନ ତଥା ମାତୃତ୍ୱକୁ ବଳି ଦେଇପାରେ ତାହାର ଏକ ନିଛକ ଚିତ୍ର ଆଙ୍କି ସମାଜରୁ ଏ ପ୍ରକାର କୁସଂସ୍କାର ଦୂର କରିବା ନିମନ୍ତେ ଆହ୍ୱାନ ଦେଇଛନ୍ତି ନାଟ୍ୟକାର ।

ସବୁ ଦୃଷ୍ଟିରୁ ନାଟକ 'ନାଲିପାନ ରାଣୀ କଳାପାନ ଟୀକା' ଯେ ଏକ ସାର୍ଥକତାର ଶୀର୍ଷକୁ ସ୍ପର୍ଶ କରିପାରିଛି - ଏଥିରେ ସନ୍ଦେହର ଅବକାଶ ନାହିଁ । 'ନାଲିପାନ ରାଣୀ କଳାପାନ ଟୀକା' ଇଉଜିନ୍ ଓ ନୀଲ୍‌ଙ୍କ ଛାୟାରେ ରଚିତ ହୋଇଥିଲେ ମଧ୍ୟ ନାଟ୍ୟକାର ବିଶ୍ୱଜିତଙ୍କ ମୌଳିକତା ଏବଂ ଓଡ଼ିଶାର ପାଣିପବନରେ ତା'ର ସମୃଦ୍ଧି ଓ ସଫଳତାକୁ ଅସ୍ୱୀକାର କରିହେବ ନାହିଁ ।

## 'ଶୁଣ ସୁଜନେ'ରେ ମନସ୍ତାତ୍ତ୍ୱିକ ଚେତନା

ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା ନାଟ୍ୟକାର ବିଶ୍ୱଜିତ୍ ଦାସ ନାଟକରେ ବହୁ ପରୀକ୍ଷା ନିରୀକ୍ଷା କରି ଓଡ଼ିଆ ନାଟକକୁ ବହୁଭାବରେ ସମୃଦ୍ଧ କରିଯାଇଛନ୍ତି ।

'ରୂପକାର' ନାଟ୍ୟସଂସ୍ଥାରେ ବିଶ୍ୱଜିତ୍‌ଙ୍କର କେତୋଟି ନାଟକ ପରିବେଷିତ ହେଲାପରେ ସେ ରାଜଧାନୀ ଭୁବନେଶ୍ୱରରେ ଆଉ ଏକ ସୌଖୀନ୍ ନାଟ୍ୟସଂସ୍ଥା 'ସଂକେତ' ଗଠନ କରିଥିଲେ । ସେହି 'ସଂକେତ' ନାଟ୍ୟସଂସ୍ଥା ଦ୍ୱାରା ବିଶ୍ୱଜିତ୍ ଦାସଙ୍କ ରଚିତ ନାରୀ ଚରିତ୍ର ବିହୀନ ମନସ୍ତାତ୍ତ୍ୱିକ ନାଟକ 'ଶୁଣ ସୁଜନେ' ତାଙ୍କରି ନିର୍ଦ୍ଦେଶନାରେ ୧୯୬୯ ମସିହାରେ ପ୍ରଥମେ ପରିବେଷିତ ହୋଇଥିଲା । ବିନା ନାରୀ ଚରିତ୍ର, ବିନା ନୃତ୍ୟ ସଂଗୀତ ସମାବେଶରେ ଅଭିନୀତ ଏହି ନାଟକ 'ଶୁଣ ସୁଜନେ' କେବଳ ମଂଚ ସଫଳତା ଅର୍ଜନ କରି ଦର୍ଶକମଣ୍ଡଳୀଙ୍କୁ ଚମତ୍କୃତ କରିନଥିଲା, ଏହା ବହୁବାର ଅଭିନୀତ ହୋଇ ବିଶେଷ ଭାବରେ ଆଲୋଚିତ ଓ ଚର୍ଚ୍ଚିତ ହୋଇପାରିଥିଲା । ନୃତ୍ୟଗୀତର ମନୋରଂଜନକୁ ପଛକରି ଏଭଳି ଏକ ଶୁଷ୍କ, ନିରସ ମଞ୍ଚସଜ୍ଜାର ପୃଷ୍ଠଭୂମିରେ 'ଶୁଣ ସୁଜନେ' ବାରମ୍ବାର ଅଭିନୀତ ହୋଇ ନାଟ୍ୟକାର ବିଶ୍ୱଜିତଙ୍କୁ ଯଥେଷ୍ଟ ଲୋକପ୍ରିୟତା ଦେବା ସଙ୍ଗେ ସଙ୍ଗେ ତାଙ୍କ ଭିତରେ ନାଟ୍ୟସୃଷ୍ଟିର ଏକ ଗଭୀର ଆତ୍ମପ୍ରତ୍ୟୟ ସୃଷ୍ଟି କରିଥିଲା ।

ଏକ ସଂକ୍ଷିପ୍ତ କଥାବସ୍ତୁର ଗଣ୍ଠି ଉପରେ ଗଠିତ ନାଟକ 'ଶୁଣ ସୁଜନେ'ର ପ୍ରୟୋଗ ଏପରି ଉଚ୍ଚକୋଟୀର ଥିଲା, ଯାହାକି ଦର୍ଶକଙ୍କୁ ନାଟକର ଶେଷ ପର୍ଯ୍ୟନ୍ତ ବାନ୍ଧି ରଖିଥିଲା, ଏକ ସୂକ୍ଷ୍ମ ମନସ୍ତାତ୍ତ୍ୱିକ ଚେତନାର ଜାଗରଣ ଭିତରେ । ସମୟର ରଥଚକ ତଳେ ସଂପର୍କର ଭାବ ବନ୍ଧନ ମଧ୍ୟରେ ଏକ ଦୁର୍ଦ୍ଧର୍ଷ ଡକାୟତ ହୃଦୟରେ ବି କିପରି ମାନବିକତାର ଅନ୍ତଃସ୍ରୋତ ପ୍ରବାହିତ ହୋଇପାରେ, ସେହିପରି ଏକ ଚେତନାର ଦୃଷ୍ଟାନ୍ତ ଅଙ୍କିତ ହୋଇଛି 'ଶୁଣ ସୁଜନେ' ନାଟକର ପ୍ରେକ୍ଷାପଟରେ ।

'ଶୁଣ ସୁଜନେ' (୧୯୬୯) ସଂପର୍କରେ ଆଲୋଚନା କଲାବେଳେ କେତୋଟି କଥା ମନକୁ ଆସେ, ଯାହାକି 'ଶୁଣ ସୁଜନେ'ର ସୃଜନବାର୍ତ୍ତା ସହିତ ଅନେକାଂଶରେ ସଂପର୍କିତ । ମଣିଷ ଜନ୍ମରୁ କେହି ଚୋର କି ଡକାୟତ କିମ୍ବା ପାପୀ ବା ଅପରାଧୀ ହୋଇ ଜନ୍ମି ନ ଥାଏ । ପରିସ୍ଥିତି, ପରିବେଶ, ସାମାଜିକ ତାଡ଼ନା ଓ ଜୀବନ ଜୀବିକାର ଅଭାବବୋଧ ହୁଏତ ମଣିଷକୁ ସେ ପ୍ରକାର ନିମ୍ନମୁଖୀ ହେବାକୁ ବାଧ୍ୟ କରେ । 'ଶୁଣ ସୁଜନେ' ନାଟକର ପ୍ରଧାନ ଆକର୍ଷଣୀୟ ଚରିତ୍ର ଦୁର୍ଜନ ସିଂ କିପରି ଦସ୍ୟୁ ବା ଡକାୟତ ପାଲଟିଛି ପୁଣି କିପରି ମାନବୀୟ ମୂଲ୍ୟବୋଧର ସାରସତ୍ତା ତାଠିଁ ଆତ୍ମଲାଭ କରିଛି ତାର ରୂପାୟନ ଘଟିଛି ନାଟକରେ । ମଣିଷପଣିଆ ବା ମାନବିକତାର ସୂକ୍ଷ୍ମ ଚେତନା କିପରି ଭାବେ ନିମ୍ନଗାମୀ ମଣିଷକୁ ଜାଗ୍ରତ ଓ ରୋମାଞ୍ଚିତ କରିପାରେ - ସେହିପରି ଏକ ଭାବବୋଧ ନାଟକର ଅନ୍ତଃସ୍ୱରରୁ ଅନୁରଣିତ ହୋଇଅଛି । ଏକ ଗୃହରେ ବିବାହ ଉତ୍ସବର ଆୟୋଜନ ମୁଖରିତ ଥିବାବେଳେ ଡକାୟତି କରିବାକୁ ଗୃହକୁ ପଶି ଆସିଛି ଡାକୁ ଦୁର୍ଜନ ସିଂ । କିନ୍ତୁ ଘଟଣା ଚକ୍ରରେ ଡାକୁ ଦୁର୍ଜନ ସିଂହର

ଚିନ୍ତାଚେତନା ଓଲଟ ପାଲଟ ହୋଇଯାଇଛି । ମୁଖରେ ଯେତେ ଯାହା ବାକ୍ ବିତଣ୍ଡା କରି ସର୍ପର ଫଁ ପରି ଭୟର ବାତାବରଣ ସୃଷ୍ଟି କରିଥିଲେ ମଧ ଅନ୍ତର ଭିତରେ ଭିନ୍ନ ଏକ ମାନବିକ ପ୍ରେମର ସ୍ରୋତ ପ୍ରବାହିତ ହୋଇଛି । ପିତୃମାତୃହୀନ ଯୁବକ, ଗୋବର୍ଦ୍ଧନଙ୍କ ଭଣଜା ଭାସ୍କର ତାଙ୍କ ମାଆଙ୍କ ଏକମାତ୍ର ସନ୍ତକ ସୁନାହାରଟିକୁ ଡାକୁ ଦୁର୍ଜନ ସିଂହ ଗ୍ରହଣ କଲାବେଳେ ତା' ହୃଦୟରେ ଏକ ସଂଗୁପ୍ତ ବା ପ୍ରଚ୍ଛନ୍ନ ପ୍ରେମର ସ୍ରୋତଟିଏ ବହିଯାଇଛି । ଫଳରେ ଦେଖାଦେଇଛି ପରିବର୍ତ୍ତନ । ଆତ୍ମପ୍ରକାଶ ଘଟିଛି ମାନବିକତାର ଅପୂର୍ବ ଚେତନା । ଦୁର୍ଜନ ସିଂହ ତାର ସ୍ମୃତିକୁ, ତାର ଅତୀତକୁ ମନେ ମନେ ରୋମନ୍ଥନ କରିଛି । ଭାସି ଉଠିଛି ଆଖି ଆଗରେ ତା'ର ଘର, ତାର ମାଆ, ତାର ପରିବାର ଏବଂ ସର୍ବୋପରି ତାର ସମାଜ ଜୀବନର ପ୍ରତିଟି ଭାବବିନ୍ଦୁ । ଭାସ୍କରର ମା'ର ସନ୍ତକକୁ ସେ ଆଉ ଗ୍ରହଣ କରିପାରି ନାହିଁ । ସବୁ ମାଆଙ୍କ ଭିତରେ ସେ ନିଜ ମାଆକୁ ଆବିଷ୍କାର କରି ଏକ ବୃହତ୍ ବିଶ୍ୱର କାନ୍‌ଭାସ୍‌ରେ ସ୍ନେହ ପ୍ରେମର ବନ୍ଧନରେ ବାନ୍ଧି ହୋଇଯାଇଛି ତା ନିଜ ଅଲକ୍ଷ୍ୟରେ । ପରାଜିତ ସୈନିକଟିଏ ପରି ବିନା ସୁନାହାରରେ ଫେରି ଯାଇଛି ଦୁର୍ଜନ ସିଂହ ଏକ ନାଟକୀୟ ସଂଧିକ୍ଷଣରେ ମନେମନେ ମାନବୀୟ ମନ୍ତ୍ର ପଢ଼ି ପଢ଼ି ।

ନାଟକ 'ଶୁଣ ସୁଜନେ'ରେ ନୃତ୍ୟଗୀତ, ନାରୀ ଚରିତ୍ର ତଥା ଅନ୍ୟାନ୍ୟ ଆକର୍ଷଣୀୟ ସାଜସଜ୍ଜା ନ ଥିଲେ ମଧ ନାଟକର ଅନ୍ୟାନ୍ୟ ଉପାଦାନମାନ ଯଥାରୀତିରେ ସଂଯୋଜିତ ହୋଇଅଛି । ପାତ୍ରାଭିମୁଖୀ ସଂଳାପ, ଉଭୟ ଅନ୍ତର୍ଦ୍ୱନ୍ଦ୍ୱ ଓ ବାହ୍ୟଦ୍ୱନ୍ଦ୍ୱ ସହିତ ଯଥାର୍ଥ ଚରିତ୍ର ଚିତ୍ରଣ ନାଟକକୁ ଓ ନାଟ୍ୟକାରକୁ ଦେଇଛି ଅସଂଖ୍ୟ ଲୋକପ୍ରିୟତା । ପ୍ରଚଳିତ ସମାଜର ଏକ ନିଛକ ଚିତ୍ରାଙ୍କନ ସହିତ ଚରିତ୍ରମାନଙ୍କର ଯଥାର୍ଥ ଚିତ୍ରଣ ନାଟ୍ୟକାର ବିଶ୍ୱଜିତଙ୍କ ରଚନା ଶୈଳୀ ଏବଂ ନାଟ୍ୟକଳାର କଳାତ୍ମକ ଦିଗକୁ ଚିହ୍ନିତ କରିପାରିଛି ।

ନାଟକ 'ଶୁଣ ସୁଜନେ' ମାତ୍ର ସାତଟି ପୁରୁଷ ଚରିତ୍ରକୁ ନେଇ ରଚିତ ହୋଇଥିଲାବେଳେ ପ୍ରଧାନ ଆକର୍ଷଣୀୟ ଦୁର୍ଜନ ସିଂହର ଚରିତ୍ର ଯେପରି ଯଥାରୀତିରେ ଅଙ୍କିତ ହୋଇଛି ଠିକ୍ ସେହିପରି ପ୍ରୌଢ଼ ଗୋବର୍ଦ୍ଧନ ଏବଂ ତାଙ୍କ ଭଣଜା ଭାସ୍କରର ଚରିତ୍ର ସଜୀବ ଭାବରେ ଚିତ୍ରିତ ହୋଇଅଛି । ଏତଦ୍ ବ୍ୟତୀତ ଭାସ୍କରଙ୍କ ଚାରିବନ୍ଧୁ ଯଥାକ୍ରମେ ସାରଙ୍ଗ, ଦ୍ୱିଜବର, ଧୁରନ୍ଧର ଓ ଅଭୟଙ୍କ ଚରିତ୍ର - ପାର୍ଶ୍ୱ ଚରିତ୍ରଭାବେ ଯଥାରୀତିରେ, ଚିତ୍ରିତ ହୋଇଅଛନ୍ତି ।

ନାଟ୍ୟଗ୍ରନ୍ଥ 'ଶୁଣ ସୁଜନେ'ର ଭୂମିକାରେ ନାଟ୍ୟକାର ଏହି ନାଟକ 'ଶୁଣ ସୁଜନେ' ଇଂରାଜୀ ଏକାଙ୍କିକା 'ସମ୍‌ଥିଙ୍ଗ୍ ଟୁ ଟକ୍ ଏବାଉଟ୍'ର ରଚନା ଶୈଳୀ ଦ୍ୱାରା କିଛି ପରିମାଣରେ ପ୍ରଭାବିତ ବୋଲି ଉଲ୍ଲେଖ କରିଥିଲେ ବି ଚରିତ୍ର ଓ ଘଟଣା ବିନ୍ୟାସ ସଂପୂର୍ଣ୍ଣଭାବେ

ନାଟ୍ୟକାରଙ୍କ କଳ୍ପନା ପ୍ରସୂତ ବୋଲି ସ୍ୱୀକାର କରିଛନ୍ତି ।

ନାଟକରେ ବ୍ୟଙ୍ଗ ବିଦ୍ରୁପ ମାଧ୍ୟମରେ ଯଥେଷ୍ଟ ହାସ୍ୟରସ ପରିବେଷିତ ହୋଇଥିଲେ ହେଁ ଏକ କଠୋର, କର୍କଶ ତଥା ନିର୍ମମ ସତ୍ତା କିପରି ସମୟର ଦୋଳନରେ ଏକ ସଂବେଦନଶୀଳ ମାନବିକ ବ୍ୟକ୍ତିସତ୍ତାରେ ରୂପାନ୍ତରିତ ବା ପରିବର୍ତ୍ତିତ ହୋଇଛି - ତାହାହିଁ ପ୍ରମାଣିତ ହୋଇଛି 'ଶୁଣ ସୁଜନେ' ନାଟକର ଶୀର୍ଷବିନ୍ଦୁରେ ।

ନିର୍ଦ୍ଦିଷ୍ଟଭାବେ ନାଟକ 'ଶୁଣ ସୁଜନେ'ର କଥାବସ୍ତୁ ହେଉଛି ବିଶେଷ କୌତୁହଳପୂର୍ଣ୍ଣ ଏବଂ ସାତଟି ଚରିତ୍ରକୁ ନେଇ ରଚିତ । ସେମାନେ ହେଲେ ପ୍ରୌଢ଼ ଗୋବର୍ଦ୍ଧନ ଓ ଦୁର୍ଜନ ସିଂହ - ଗୋବର୍ଦ୍ଧନଙ୍କ ଭଣଜା ଭାସ୍କର ଓ ତାର ଚାରିଜଣ ବଂଧୁ । ଗୋବର୍ଦ୍ଧନ ଭାସ୍କରର ବିବାହ ଆୟୋଜନ କରୁଥିବାବେଳେ ବିବାହର ପୂର୍ବରାତିରେ ପ୍ରଖ୍ୟାତ ଡାକୁ ଦୁର୍ଜନ ସିଂ ପଶିଆସି ସେମାନଙ୍କୁ ନାନା ଭାବରେ ଭୟଭୀତ କରାଇଛି । କେବଳ ଭାସ୍କର ଦୁର୍ଜନ ସିଂହଙ୍କୁ ସାହସର ସହିତ ସାମ୍ନାକରିଛି ଏବଂ ସ୍ୱରଚିତ ଏକ କବିତା ପାଠ କରିଛି । ତା'ପରେ ଦୁର୍ଜନ ସିଂହ ସମସ୍ତ ବାକ୍ସକୁ ନେବାକୁ ଚାହିଁଛି । ପ୍ରଥମ ବାକ୍ସରୁ ପାଞ୍ଚ ହଜାର ଟଙ୍କା ପାଇଥିବାବେଳେ ଦ୍ୱିତୀୟ ବାକ୍ସରୁ କୋଡ଼ିଏ ଭରି ଓଜନର ସୁନାହାରଟିଏ ପାଇ ଖୁସି ହୋଇଯାଇଛି । କିନ୍ତୁ ଗୋବର୍ଦ୍ଧନ କହିଛନ୍ତି - ସେ ପାଞ୍ଚହଜାର ନେଇଗଲେ ବିବାହ ଖର୍ଚ୍ଚ ପାଇଁ ଆଉ କୌଣସି ସମ୍ବଳ ତା ପାଖରେ ରହିବ ନାହିଁ, ଦ୍ୱିତୀୟ ବାକ୍ସର ହାରଟି ଭାସ୍କରର ବୋଉ ତା'ର ବୋହୂକୁ ପିନ୍ଧାଇବା ପାଇଁ ରଖି ଦେଇଯାଇଛି । ତା'ପରେ ଦୁର୍ଜନ ସିଂହ ସଶବ୍ଦରେ ହସିଉଠିଛି ପୁଣି ସେହି ହସ ଧୀରେ ଧୀରେ ରୂପାନ୍ତରିତ ହୋଇଛି ବିଷାଦ କାଳିମାରେ । ତା'ପରେ ସେ ଦୀର୍ଘଶ୍ୱାସ ଛାଡ଼ି ରୁକ୍ଷ ସ୍ୱରରେ କହିଉଠିଛି - ଖବରଦାର୍, ବୋଉ ନାଁ କେହି ମୁହଁରେ ଧରିବ ନାହିଁ । ମୋର ବୋଉ ଫୋଉ କେହି ନାହିଁ, ମୁଁ ଡକାୟତ ଦୁର୍ଜନ ସିଂ ... ଥିଲା, ବୋଉ ଥିଲା । ଆଉ ମୁଁ ଡକାୟତ ନ ଥିଲି । ତା'ପରେ ମୁଁ ଡକାୟତ ହେଲି, ଡକାୟତ ଦୁର୍ଜନ ସିଂ, ଆଉ ବୋଉ ଏତେ ବୋକା - ସହି ପାରିଲାନାହିଁ । ବେକରେ ରସି ଲଗାଇଦେଲା । ସେଇ ଦିନୁ ମୋର ଆଉ ବୋଉ ନାହିଁ - ମୋର କେହି ନାହିଁ ।

କିଛି ସମୟପରେ ହଠାତ୍ ଭାସ୍କରକୁ ଟାଣିଆଣି ତା' ହାତରେ ବାକ୍ସଟା ଧରାଇ ଦେଇ କହିଲା - 'ନେ, ଧର', ଭାସ୍କର ଆଶ୍ଚର୍ଯ୍ୟ ହୋଇ କହିଲା - ମୁଁ କ'ଣ କରିବି ? ଦୁର୍ଜନ ସିଂ ଖତେଇ ହୋଇ କହିଲା - ବଦ୍‌ମାସ୍, ପଚାରୁଛି, ମୁଁ କ'ଣ କରିବି ? ତୋ ବୋଉର ଗହଣା ମୁଁ କାହିଁକି ନେବି ?

ତା'ପରେ ଦୁର୍ଜନ ସିଂହ କିଛି ନ ନେଇ ଚାଲିଯାଇଛି ।

ଏହି କଥାବସ୍ତୁର ଅନ୍ତରାଳରେ ନାଟ୍ୟକାର ଦୁର୍ଜନ ସିଂହକୁ ତାର ମା'ର ସ୍ମୃତି ଭିତରେ ଏକ ବେଦନାବିଦ୍ଧ ପ୍ରାଣର ବିଳାପକୁ ବେଶ୍ ନୀରବିତ ଭାବେ ଅଙ୍କନ କରି ନାଟକର ନାଟକୀୟ ମୋଡ଼ ପରିବର୍ତ୍ତନକୁ ବଳବତ୍ତର କରି ରଖିଛନ୍ତି । ଏହାହିଁ ନାଟକର ସାର୍ଥକତା । ରୁକ୍ଷ, କର୍କଶ ପ୍ରାଣରେ ଯେ ମାନବିକ ସଂବେଦନା ଜାଗ୍ରତ ହୋଇପାରେ - ଏହାର ଏକ ମାର୍ମିକ ଦୃଷ୍ଟାନ୍ତ ଦେଇ ନାଟ୍ୟକାର ବିଶ୍ୱଜିତ୍ ନିଜ ବଳିଷ୍ଠ ନାଟ୍ୟ ରଚନାର ଅପୂର୍ବ ଦକ୍ଷତା ପ୍ରତିପାଦନ କରିପାରିଛନ୍ତି ।

ଗୋଟିଏ କ୍ଷୁଦ୍ରଗଳ୍ପର ସାଧାରଣ ବିସ୍ତୃତି ପରି ମାତ୍ର ଗୋଟିଏ ରାତିର ଘଟଣାକୁ ନେଇ ନାଟ୍ୟକାର ବିଶ୍ୱଜିତ୍ ଯେପରି ଭାବେ 'ଶୁଣ ସୁଜନେ' ନାଟକର ଉପସ୍ଥାପନା କରିଛନ୍ତି ଏବଂ ତାକୁ ସଫଳ କରିବାରେ ସମର୍ଥ ହୋଇଛନ୍ତି ତା'ର ତୁଳନା ନାହିଁ । ଓଡ଼ିଆ ନବନାଟ୍ୟ ଧାରାରେ ବିଶ୍ୱଜିତ୍‌ଙ୍କର ଏହି ମନସ୍ତାତ୍ତ୍ୱିକ ନାଟକ 'ଶୁଣ ସୁଜନେ' ଯେ ଏକ ସଫଳ ସଂଯୋଜନ - ଏଥିରେ ସନ୍ଦେହ ନାହିଁ ।

### ବିଶ୍ୱଜିତ୍‌ଙ୍କ ନାଟ୍ୟମନ୍ଦିରର ଚୂଡ଼ା : ମୃଗୟା

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ରଚିତ ନାଟକମାନଙ୍କ ମଧ୍ୟରେ 'ମୃଗୟା' (୧୯୭୦) ଶୀର୍ଷସ୍ଥାନ ଅଧିକାର କରେ । ବିଶିଷ୍ଟ ନାଟ୍ୟ ସମାଲୋଚକ ଡକ୍ଟର ହେମନ୍ତ କୁମାର ଦାସ 'ମୃଗୟା'କୁ ଯଥାର୍ଥରେ ବିଶ୍ୱଜିତଙ୍କ ନାଟ୍ୟମନ୍ଦିରର ଚୂଡ଼ା ବୋଲି ଅଭିହିତ କରିଅଛନ୍ତି । ଉକ୍ତିଟି ନିହାତି ସତ୍ୟ । ବିଶ୍ୱଜିତ୍ ଆଉ କୌଣସି ନାଟକ ନ ଲେଖି କେବଳ ଏହି ଗୋଟିଏ ନାଟକ 'ମୃଗୟା' ରଚନା କରିଥିଲେ ମଧ୍ୟ ସେ ଓଡ଼ିଆ ନାଟ୍ୟ ସାହିତ୍ୟ ଇତିହାସରେ ସ୍ମରଣୀୟ ହୋଇ ରହିଥାନ୍ତେ ଏବଂ 'ମୃଗୟା' ଏକ କାଳଜୟୀ ନାଟକ ଭାବେ ପରିଗଣିତ ହୋଇ ରହିଥାନ୍ତା ।

'ମୃଗୟା' ବିଶ୍ୱଜିତ୍ ଦାସଙ୍କର ଏକ ନୂତନ ପ୍ରୟୋଗଧର୍ମୀ ନାଟକ । ସାମ୍ପ୍ରତିକ ସମାଜର ଖଣ୍ଡିତ ଜୀବନ ଚିତ୍ରମାନ ଅତ୍ୟନ୍ତ ନିଚ୍ଛକ ଭାବରେ, ନୂତନ ପରିପାଟୀରେ ଅଙ୍କିତ ହୋଇଛି 'ମୃଗୟା'ରେ ।

'ମୃଗୟା'ର ପ୍ରକୃତ ଅର୍ଥ ହେଉଛି ସୌଖୀନ ଶିକାର । ରାଜା ମହାରାଜାଙ୍କ ଠାରୁ ଆରମ୍ଭ କରି ବ୍ୟାଧ ଓ ସୈନିକ ପର୍ଯ୍ୟନ୍ତ ଅରଣ୍ୟକୁ ମୃଗୟାରେ ଯାଆନ୍ତି ପଶୁ ଶିକାର ନିମନ୍ତେ । ଏଠାରେ ନାଟକ 'ମୃଗୟା'ରେ ଜୀବନ ମୃଗୟାର ଅଭିନବ ଚିତ୍ର ଚିତ୍ରିତ ହୋଇଛି ନିଆରା ପରିପାଟୀରେ ।

ଅର୍ଥର ଶିକାର ନିମନ୍ତେ ଏଠି ପ୍ରତ୍ୟେକ ଯେମିତି ବ୍ୟାକୁଳ । ଜୀବନ ପାଇଁ ଅର୍ଥର ଆବଶ୍ୟକତା ଥିଲେ ବି ମଣିଷ ପ୍ରେମ, ବିଶ୍ୱାସ, ମୂଲ୍ୟବୋଧକୁ ପଛକରି ଅର୍ଥ ପଛରେ କିପରି

ପ୍ରଧାବିତ ତାହାର ଏକ ଜୀବନ୍ତ ଚିତ୍ର ଅଙ୍କିତ ହୋଇଛି 'ମୃଗୟା' ନାଟକରେ ଅତ୍ୟନ୍ତ ଅଭିନବ ରୀତିରେ ।

ଆଦର୍ଶ ଶିକ୍ଷକ ବିବେକାନନ୍ଦ ପତ୍ନୀଙ୍କ ବିୟୋଗ ପରେ ନିଜର କନ୍ୟା ମୁକ୍ତା ଓ ପୁତ୍ର ସାରଥୀକୁ ସ୍ୱଚ୍ଛନ୍ଦରେ ପରିପାଳନ କରି ରଖିଥିଲେ ମଧ୍ୟ ତାଙ୍କ ପାରିବାରିକ ଶାନ୍ତି ବ୍ୟାହତ ହୋଇଛି । ଶିକ୍ଷକ ବିବେକାନନ୍ଦ ଶୁଭେନ୍ଦୁ ନାମକ ନିରାଶ୍ରୟ ବାଳକକୁ ପରିପାଳନ କରି ବଡ଼ କରାଇଥିଲେ ଏବଂ ତାରି ହସ୍ତରେ ନିଜର ଏକମାତ୍ର କନ୍ୟା ମୁକ୍ତାକୁ ଛନ୍ଦିଦେଇ ନିଶ୍ଚିନ୍ତ ହେବାର ଆଶା ପୋଷଣ କରିଥିଲେ ମଧ୍ୟ ସେ ଆଶା ତାଙ୍କର ଆଶାରେ ରହିଯାଇଛି । ଶୁଭେନ୍ଦୁ ଆଇ.ଏ.ଏସ୍. ପାଇଯିବା ପରେ ଟଙ୍କା, ଗାଡ଼ି ଆଦି ଯୌତୁକର ପ୍ରଲୋଭନ ତାକୁ ମୁକ୍ତାଠାରୁ ଦୂରେଇ ନେଇଛି । ସାରଥୀ ଭଲ ପାଠ ପଢ଼ି ନ ପାରି ଏକ ଲକ୍ଷ୍ୟହୀନ ଜୀବନଯାପନ କରି ପିତା ବିବେକାନନ୍ଦଙ୍କୁ ଦାୟୀ କରିଛି । ବ୍ୟବସାୟୀ କଳ୍ପତରୁ ମୁକ୍ତାକୁ ବିବାହ କଲାପରେ ସମୁଦ୍ରକୂଳରେ ସୁନ୍ଦର ଘରଟିଏ କରିଦେବାର ଦେଇଥିବା ପ୍ରତିଶ୍ରୁତି ତା'ର ପ୍ରତିଶ୍ରୁତିରେ ରହିଯାଇଛି । ବିବାହ ପରେ ସେ ତାକୁ ପ୍ରତାରିତ କରିଛି । ଆକାଶ ଆଉ ସମୁଦ୍ରର ସୌନ୍ଦର୍ଯ୍ୟଠାରୁ ଦୂରେଇ ଯାଇଛି ମୁକ୍ତାର ସ୍ୱପ୍ନ ସାମ୍ରାଜ୍ୟ । ପରନ୍ତୁ ଭାଲୁନାଚ ଦେଖି ମାତ୍ର ଆଠଅଣା ପଇସା ଖର୍ଚ୍ଚ ନିମନ୍ତେ ତାକୁ ସ୍ୱାମୀଠାରୁ ତିରସ୍କୃତ ହେବାକୁ ପଡ଼ିଛି । ଶ୍ରମିକ ନେତା ସାଜିଥିବା ସନାତନ ମିଶ୍ର ମାଲିକର ଦଲାଲ ସାଜି ମାଲିକ ନିକଟରେ କିଣି ହୋଇଯାଇ ଶ୍ରମିକମାନଙ୍କୁ ପ୍ରତାରିତ କରିଛି ।

ଏହପରି ଭାବରେ ଜୀବନ ମୃଗୟାର ପ୍ରତ୍ୟେକଟି ଚରିତ୍ର ପ୍ରତି ମୁହୂର୍ତ୍ତରେ କ୍ଷତବିକ୍ଷତ ହୋଇପଡ଼ିଛନ୍ତି । ଶିକ୍ଷକ ବିବେକାନନ୍ଦ, କନ୍ୟା ମୁକ୍ତା, ଆଇ.ଏ.ଏସ୍. ଶୁଭେନ୍ଦୁ, ବିବେକାନନ୍ଦଙ୍କ ପୁତ୍ର ସାରଥୀ, ଶ୍ରମିକ ନେତା ସନାତନ ମିଶ୍ର ସମସ୍ତେ ଶରବିଦ୍ଧ ହୋଇ ନୀରବ ଆର୍ତ୍ତନାଦରେ ଦଗ୍ଧୀଭୂତ ହୋଇଉଠିଛନ୍ତି । ଆଧୁନିକ ମଣିଷର ପ୍ରକୃତ ସ୍ୱରୂପ ଆବିଷ୍କୃତ ହୋଇଛି ମୃଗୟା ନାଟକରେ । ମୂଲ୍ୟବୋଧକୁ ପଛ କରି ସଭିଏଁ କିପରି ଅର୍ଥ ଆଉ କ୍ଷମତା ନିମନ୍ତେ ପ୍ରଧାବିତ - ତା'ର ନିଛକ ଚିତ୍ର ଅଙ୍କିତ ହୋଇଛି 'ମୃଗୟା'ରେ ଏକ ଅଭିନବ ପରିପାଟୀରେ ।

'ମୃଗୟା'ର ପ୍ରତିଟି ଚରିତ୍ର ଯେପରି ଅତ୍ୟନ୍ତ ନିଖୁଣ ଭାବେ ଅଙ୍କିତ ହୋଇଛି ନାଟକର ସଙ୍ଘାତ ମଧ୍ୟ ସେହିପରି ଯଥାରୀତିରେ ସଂଯୋଜିତ ହୋଇଅଛି । ନାଟକର କ୍ଷୁଦ୍ର ଖଣ୍ଡିତ ସଂଳାପ ଗୁଡ଼ିକ ଅତ୍ୟନ୍ତ ମନୋରମ ପରିପାଟୀରେ ସଂଯୋଜିତ ହୋଇ ନାଟକକୁ ଖୁବ୍ ଉଚ୍ଚକୋଟିର ଓ ପ୍ରଭାବଶାଳୀ କରିପାରିଛି ।

ନାଟକ 'ମୃଗୟା'ର ଅଭିନବ ପ୍ରୟୋଗରୀତି, ଆଲୋକସଂପାତ ଏବଂ ଦୃଶ୍ୟସଜ୍ଜା

ଅତ୍ୟନ୍ତ ଅଭିନବ ତଥା ନବନାଟ୍ୟ ଧାରାର ଏକ ସ୍ୱତନ୍ତ୍ର ଅବଦାନ ଭାବେ ପରିଗଣିତ ହୋଇପାରିଛି ।

## ବିଶ୍ୱଜିତ୍‌ଙ୍କ ଆବେଗଧର୍ମୀ ନାଟ୍ୟକୃତି : ସମ୍ରାଟ

ନବନାଟ୍ୟ ଆନ୍ଦୋଳନର ଅନ୍ୟତମ କାଣ୍ଡାରୀ ବିଶ୍ୱଜିତ୍ ଦାସ ନାଟ୍ୟ ରଚନା କ୍ଷେତ୍ରରେ ଏକ ପାରଙ୍ଗମ ବିନ୍ଧାଣୀ । ସେ ଯେଉଁ ମୌଳିକ ନାଟକ ଓ ଏକାଙ୍କିକା ମାନ ରଚନା କରିଛନ୍ତି, ତା'ର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି । ନିଜର ମୌଳିକ ରଚନା ସହିତ ଓଡ଼ିଆ ଦର୍ଶକଙ୍କୁ ବିଶ୍ୱନାଟକ ସହିତ ପରିଚିତ କରାଇବା ନିମନ୍ତେ ସେ ବିଶ୍ୱର ବିଭିନ୍ନ ଲେଖକଙ୍କ ସୃଷ୍ଟିକୁ ଆଧାର କରି କେତେକ ନାଟକର ଅବଲମ୍ବନରେ ଓଡ଼ିଆରେ ନାଟକ ରଚନା କରିଛନ୍ତି । କେତେବେଳେ କେଉଁ ନାଟକ ଅବଲମ୍ବନରେ ଅର୍ଥାତ୍ କେଉଁ ନାଟକକୁ ଆଧାରକରି ନାଟ୍ୟ ରଚନା କରିଛନ୍ତି ତ କେବେ ପୁଣି କେଉଁ ନାଟକର ଅନୁସୃଷ୍ଟି ବା କାହାର ସଂପାଦନା କରି ବିଶ୍ୱବିଖ୍ୟାତ ନାଟ୍ୟକାରମାନଙ୍କ ରଚନାର ମୁଖ୍ୟ ବାର୍ତ୍ତା ଓ ଶୈଳୀରେ ପ୍ରଭାବିତ ହୋଇଅଛନ୍ତି ।

ବିଶ୍ୱବିଖ୍ୟାତ କଥାକାର ଆଲ୍‌ବେଆର କାମ୍ୟୁଙ୍କ 'କାଲିଗୁଲା'ର ବକ୍ତବ୍ୟ ଓ ସ୍ୱର ଅକ୍ଷୁର୍ଣ୍ଣ ରଖି ବିଶ୍ୱଜିତ୍ ଦାସ ରଚନା କରିଛନ୍ତି ନାଟକ - 'ସମ୍ରାଟ' । ତେଣୁ 'ସମ୍ରାଟ'କୁ କାମ୍ୟୁଙ୍କ କାଲିଗୁଲାର ଅନୁବାଦ ନ କହି ଅନୁସୃଷ୍ଟି କୁହାଯାଇପାରେ । ଏ ସଂପର୍କରେ ନାଟ୍ୟକାର ବିଶ୍ୱଜିତଙ୍କ ସ୍ୱୀକାରୋକ୍ତି ଏଠାରେ ଉଦ୍ଧାର କରାଯାଇପାରେ - 'କାମ୍ୟୁଙ୍କ ବକ୍ତବ୍ୟ ଓ ନାଟକର ସ୍ୱର ଅକ୍ଷୁର୍ଣ୍ଣ ରଖି ମୁଁ କିଛିଟା ସଂପାଦନା କରିଛି ।'

('ସମ୍ରାଟ'ର ଭୂମିକା - ସମ୍ରାଟ, ସାଥୀ ପ୍ରକାଶନ, ୨ୟ ପ୍ରକାଶ, ୧୯୮୦)

ନାଟକ 'ସମ୍ରାଟ' (୧୯୭୨)ର ପ୍ରୟୋଗ ଓ ବାର୍ତ୍ତା ଅତ୍ୟନ୍ତ ଆବେଗଧର୍ମୀ । ରୋମ୍‌ର ତରୁଣ ସମ୍ରାଟ କାଲିଗୁଲାଙ୍କ ବିକ୍ଷୁବ୍ଧ ମାନସିକତା ଏବଂ ସ୍ୱାଧୀନତା ନାମରେ ନିଜ ଅଖଣ୍ଡ କ୍ଷମତାର ଅପପ୍ରୟୋଗ 'ସମ୍ରାଟ' ନାଟ୍ୟବୃତ୍ତର ମୁଖ୍ୟ ଆଧାର ଭାବେ ପରିବେଷିତ ହୋଇଅଛି । ଅସତ୍ୟକୁ ସତ୍ୟ ବୋଲି କହି, ଅକର୍ମକୁ ଯଥାର୍ଥ କର୍ମ ବୋଲି ଭାବି ଶାସକ କିପରି ଜଟିଳ ଜୀବନଚର୍ଯ୍ୟାକୁ ପ୍ରାଧାନ୍ୟ ଦେଇ ନିଜ ଆଧିପତ୍ୟର ଦଂଶନରେ ନିଜେ ଜଳିବା ସହିତ ନିରୀହ ମଣିଷମାନଙ୍କୁ ନିଃଶେଷ କରିବାକୁ ପଶ୍ଚାତ୍‌ପଦ ହୁଏନାହିଁ ତାହା ରୋମ୍‌ର ତରୁଣ ସମ୍ରାଟ କାଲିଗୁଲାଙ୍କ ଜୀବନରେ କିପରି ସମ୍ଭବ ହୋଇଛି - ତାହା ନାଟକ 'ସମ୍ରାଟ'ରେ ଚିତ୍ରିତ ହୋଇଅଛି ।

କାଲିଗୁଲା 'ସମ୍ରାଟ' ନାଟକର ମୁଖ୍ୟ ନାୟକ । ତରୁଣ ବୟସରେ ସେ ରୋମ୍‌ର ସମ୍ରାଟ । ତେଣୁ ଅନଭିଜ୍ଞା ଡ୍ରୁସିଲାକୁ ସେ ଭଲ ପାଇଛନ୍ତି । ଡ୍ରୁସିଲାର ମୃତ୍ୟୁପରେ କାଲିଗୁଲା

ପ୍ରାସାଦରୁ କୁଆଡ଼େ ଚାଲିଯାଇଛନ୍ତି ତିନିଦିନ ପାଇଁ । ଉଭଟ ଚିନ୍ତା ଚେତନାରେ ଜଡ଼ସଡ଼ କାଲିଗୁଲା ଜୀବନର ପ୍ରତିଟି ମୁହୂର୍ତ୍ତକୁ ଦେଖୁଛନ୍ତି ଅତ୍ୟନ୍ତ ଅସ୍ୱାଭାବିକ ଭାବରେ ।

କାଲିଗୁଲା ରୋମ୍‌ର ସମ୍ରାଟ । ଅଖଣ୍ଡ କ୍ଷମତାର ଅଧିକାରୀ । ସ୍ୱାଧୀନତା ନାମରେ ସେ ଜାହିର କରିଛନ୍ତି ନିଜର ଯଥେଚ୍ଛାଚାର । ତାଙ୍କ ମଣିଷମାନେ ପୋକମାଛିଠାରୁ ହୀନ । ସେ ଯାହାକୁ ଚାହାନ୍ତି ତାହାକୁ ଶାସ୍ତି ବିଧାନ କରନ୍ତି ତ କାହାକୁ ଫାଶୀ ଖୁଣ୍ଟରେ ବି ଝୁଲାଇ ଦିଅନ୍ତି । କାଲିଗୁଲା ଘୋଷଣା କରନ୍ତି 'ଆଜିଠାରୁ ଯେତେଦିନ ଯାଏ ମୁଁ ବଞ୍ଚିବି ସେତେଦିନ ପର୍ଯ୍ୟନ୍ତ ମୋର ଅବାଧ ସ୍ୱାଧୀନତା । ମୋର ସ୍ୱାଧୀନତାରେ କୌଣସି ସୀମା ରହିବନାହିଁ ।

ଆଧୁନିକ ମଣିଷ ଜୀବନର ଅସଙ୍ଗତିବୋଧ ଏବଂ ଅସାମଂଜସ୍ୟତା ପ୍ରତିଫଳିତ ହୋଇଛି 'ସମ୍ରାଟ' ନାଟକରେ ଅତ୍ୟନ୍ତ ନିଛକ ପରିପାଟୀରେ । ଚାରି ଅଙ୍କ ବିଶିଷ୍ଟ ଏହି ନାଟକ 'ସମ୍ରାଟ'ରେ ଦୃଶ୍ୟ ବିଭାଜନ ହୋଇନାହିଁ । ଏହାର କଥାବସ୍ତୁ ଓଡ଼ିଶାର କିମ୍ବା ଭାରତବର୍ଷରେ ନୁହେଁ - ବିଷୟବସ୍ତୁ - ପ୍ରସିଦ୍ଧ ରୋମ୍ ସାମ୍ରାଜ୍ୟର । ନାଟକର ମୁଖ୍ୟ ନାୟକ କାଲିଗୁଲା ଓ ମୁଖ୍ୟ ନାୟିକା କେସୋନିଆଙ୍କ ବ୍ୟତୀତ, ସେରିଆ, ହେଲିକନ୍, ସିପିଓ ଏବଂ ରୋମ୍ ରାଜବଂଶର ଚାରିଜଣ ବ୍ୟକ୍ତିଙ୍କୁ ନେଇ ନାଟକ ଗତିଶୀଳ । ନାଟକ 'ସମ୍ରାଟ'ରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରୋମ୍ ସାମ୍ରାଜ୍ୟର ସୁସଜ୍ଜିତ ଦୃଶ୍ୟସଜ୍ଜା ପରିକଳ୍ପିତ ।

ପ୍ରଥମ ଅଙ୍କରେ ରାଜବଂଶର କେତେଜଣ ବ୍ୟକ୍ତି ଅନଭିଜ୍ଞ ତରୁଣ ସମ୍ରାଟ କାଲିଗୁଲାଙ୍କ ଉଦ୍ଦେଶ୍ୟରେ ମନ୍ତ୍ରଣାରତ ଥିବାବେଳେ କାଲିଗୁଲା ପ୍ରବେଶ କରିଛନ୍ତି । ସମ୍ରାଟ କାଲିଗୁଲାଙ୍କ ଜୀବନରେ ଅସମ୍ଭବ ବୋଲି କିଛି ନାହିଁ । ସେ କହନ୍ତି - "ମୁଁ ନିଷ୍ପତ୍ତି କରିଛି ଯୁକ୍ତିବାଦୀ ହେବି ।' ଆଉ ମୋର ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାର କ୍ଷମତା ମୋର ଅଛି । + + + ଗୋଟି ଗୋଟି କରି ପ୍ରତ୍ୟେକଟି ବିରୁଦ୍ଧ ମତବାଦକୁ ମୁଁ ମୂଳପୋଛ କରିବି ।"

(ସମ୍ରାଟ, ଦ୍ୱିତୀୟ ପ୍ରକାଶ - ୧୯୮୦, ପୃ-୧୫)

କାଲିଗୁଲାଙ୍କ କ୍ଷମତା ଓ ଅଧିକାରର ଶେଷ ନାହିଁ । ସେ ଯାହା ଚାହାନ୍ତି ତାହାହିଁ କରନ୍ତି । ଯେକୌଣସି କର୍ମଚାରୀର ବିରୋଧ ମତବାଦକୁ ସେ କ୍ଷଣକରେ ନିଶ୍ଚିନ୍ନ କରି ଦେଇପାରନ୍ତି । ସେ ଦୃଢ଼କଣ୍ଠରେ ନିଜର ପ୍ରେମିକା କେସୋନିଆ ନିକଟରେ ଘୋଷଣା କରି କହନ୍ତି - 'ମୁଁ ଆକାଶକୁ ସମୁଦ୍ର ଭିତରେ ବୁଡ଼େଇ ଦେବି । ସୁନ୍ଦର ସାଙ୍ଗରେ ଅସୁନ୍ଦରକୁ ମିଶେଇ ଦେବି । ଯନ୍ତ୍ରଣା ଭିତରେ ହସର ଜୁଆର ଛୁଟାଇ ଦେବି ।'

(ସମ୍ରାଟ, ପ୍ରଥମ ଅଙ୍କ, ଦ୍ୱିତୀୟ ପ୍ରକାଶ, ୧୯୮୦, ପୃ-୨୧)

ପ୍ରତିଟି ଅସମ୍ଭବ କାର୍ଯ୍ୟକୁ ସେ ଅତ୍ୟନ୍ତ ସହଜ ଭାବରେ ଆୟତ କରିବାକୁ ଚାହାନ୍ତି । ଅସମ୍ଭବ ବୋଲି କିଛି ନାହିଁ ତାଙ୍କ ସାମ୍ନାରେ । ଏପରିକି ସେ ଚନ୍ଦ୍ରକୁ ହାତମୁଠାରେ ରଖିପାରିବାର ଆସ୍ଫାଳନ କରିପାରନ୍ତି ଅତ୍ୟନ୍ତ ସହଜଭାବରେ । କୌଣସି କାର୍ଯ୍ୟ ଯେମିତି ତାଙ୍କଠି ଅସମ୍ଭବ ବୋଲି କିଛି ନାହିଁ । ଦୟା ମାୟା ବି ତାଙ୍କଠି କିଛି ନାହିଁ । ସେ ନିଜର ପ୍ରାଣପ୍ରିୟା ପ୍ରେମିକା କେସୋନିଆକୁ ବି ଗଳା ଚିପି ହତ୍ୟା କରିପାରନ୍ତି । ଯେକୌଣସି ଆସାମୀକୁ ସେ ବିନା ବିଚାରରେ ପ୍ରାଣଦଣ୍ଡ ଦେଇପାରନ୍ତି । କାଲିଗୁଲାଙ୍କ ଅଦ୍ଭୁତ କଳ୍ପନା ଓ ଚିନ୍ତାଧାରାରେ ରୋମ୍‌ର ଜନସାଧାରଣ ବିଦ୍ରୋହୀ ହୋଇ ଉଠିଥିଲେ ମଧ୍ୟ ସାମ୍ନାସାମ୍ନି ଯୁଦ୍ଧ ବା ବିରୋଧ କରିପାରି ନାହାନ୍ତି । ସେ କବି ବା ସାହିତ୍ୟିକଙ୍କୁ ଭଲ ପାଆନ୍ତି ନାହିଁ । ତାଙ୍କର ଧାରଣା ସେମାନେ ସବୁ ମିଛ ଲେଖନ୍ତି । ବେଶ୍ୟାଳୟକୁ ସେ ପ୍ରୋତ୍ସାହନ ଦିଅନ୍ତି । ସବୁଠାରୁ ଅଧିକଥର ବେଶ୍ୟାଳୟରେ ଯୋଗଦାନ କରିଥିବା ବ୍ୟକ୍ତିକୁ ପୁରସ୍କାର ଓ ଜାତୀୟ ମାନ୍ୟତା ଦେବାକୁ ଚାହାଁନ୍ତି । ମାତ୍ର ସେ ବ୍ୟକ୍ତି ଯଦି ସେ ପୁରସ୍କାର ବା ସମ୍ମାନ ଗ୍ରହଣ ନକରେ – ତେବେ ତାଙ୍କୁ ମୃତ୍ୟୁଦଣ୍ଡ ଗ୍ରହଣ କରିବାକୁ ହେବ ବୋଲି ଘୋଷଣା କରିଛନ୍ତି । ଯଦି ଏକ ସମ୍ରାଟର ଗତି ଓ ଆଦର୍ଶ ଏପରି ହୁଏ, ତେବେ ରାଜ୍ୟରେ ଅସନ୍ତୋଷର ବହ୍ନି ଜଳିବା ତ ସ୍ୱାଭାବିକ । କିନ୍ତୁ ନିର୍ଦ୍ଦୟ କାଲିଗୁଲା ସେ ସବୁ ଅସନ୍ତୋଷକୁ ଖାତିର କରନ୍ତି ନାହିଁ । ତେଣୁ ସେ ବିନାଦ୍ୱିଧାରେ ବିଦ୍ରୋହୀଙ୍କୁ ହତ୍ୟାକରି ପାରନ୍ତି ।

'ସମ୍ରାଟ' ନାଟକରେ ଆଉ ଏକ ବୈଚିତ୍ର୍ୟପୂର୍ଣ୍ଣ ବିଷୟ ଦେଖିବାକୁ ମିଳେ ତାହା ହେଲା – କାଲିଗୁଲା ନିଜ ରାଜବଂଶର କର୍ମଚାରୀଙ୍କୁ ମାରିବା ପାଇଁ ଏକ ଛଳନାର ଆଶ୍ରୟ ନେଇ ସେ ନିଜେ ଭଗବାନଙ୍କର ଅବତାର ରୂପ ଧାରଣ କରି ସେମାନଙ୍କୁ ନିଃଶେଷ କରିପାରନ୍ତି ।

ଏହି ଧାରାରେ ନାଟକ ଗତିଶୀଳ ହୋଇଛି ଏବଂ ଦର୍ଶକଙ୍କୁ ଚରମ ଉତ୍କଣ୍ଠାରେ ଧରି ରଖିଥିବାବେଳେ ନାଟକର ଶେଷ ଅଙ୍କ ଆରମ୍ଭ ହୋଇଛି । ଶେଷ ଅଙ୍କର ଘଟଣା ଅତ୍ୟନ୍ତ ମର୍ମାନ୍ତିକ ଏବଂ କାରୁଣ୍ୟପୂର୍ଣ୍ଣ । କାଲିଗୁଲାଙ୍କ ବିରୁଦ୍ଧରେ ବିଦ୍ରୋହ ଓ ଷଡ଼ଯନ୍ତ୍ର ଘନୀଭୂତ ହୋଇ ଆସୁଥିବାର ଜାଣି ସେ ନିଜେ ମରିବାର ବହୁପୂର୍ବରୁ ନିଜ ପ୍ରେମିକା କେସୋନିଆକୁ ନିଜହାତରେ ହତ୍ୟା କରିଛନ୍ତି । ଏପରି ଏକ ଭୟଙ୍କର ଭାବାବେଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ନାଟକର ନାଟକୀୟତାକୁ ଶୀର୍ଷ ସୀମାରେ ପହଞ୍ଚାଇ ନାଟ୍ୟକାର ନିଜ ଅପୂର୍ବ ଦକ୍ଷତାର ପରିଚୟ ଦେଇଅଛନ୍ତି । କାଲିଗୁଲା ଶେଷରେ ସଶସ୍ତ୍ର ଷଡ଼ଯନ୍ତ୍ରକାରୀଙ୍କ ସମେତ ସିପିଓ ଓ ସେରିଆଙ୍କଦ୍ୱାରା ଛୁରିକା ଘାତରେ ମୃତ୍ୟୁ ବରଣ କରିଛନ୍ତି । କିନ୍ତୁ ମରିବାର ଶେଷ ମୁହୂର୍ତ୍ତରେ ବି କାଲିଗୁଲା ବଞ୍ଚିବାର କଥା ଦୃଢ଼ କଣ୍ଠରେ ସ୍ୱୀକାର କରିଛନ୍ତି ।

କାମ୍ୟୁଙ୍କ ବକ୍ତବ୍ୟକୁ ଅକ୍ଷୁର୍ଣ୍ଣ ରଖି ନାଟ୍ୟକାର ବିଶ୍ୱଜିତ୍ ଯେଉଁଭଳି ଭାବେ 'ସମ୍ରାଟ' ନାଟକକୁ ସାଫଲ୍ୟର ଚରମ ସୀମାରେ ପହଞ୍ଚାଇଛନ୍ତି ତାହାର ତୁଳନା ନାହିଁ । ନାଟକରେ ଦ୍ୱନ୍ଦ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କ୍ରମାଗତ ଲାଗି ରହିବା ଦ୍ୱାରା ନାଟକର ସଫଳତା ଶୀର୍ଷକୁ ପହଞ୍ଚିବାରେ ସହାୟକ ହୋଇପାରିଛି । ସଂଘାତ ସହିତ ଓଜନଦାର ସଂଳାପର ସଂଯୋଜନା ନାଟକକୁ କରିଛି ଉଚ୍ଚକୋଟୀର ତଥା ପ୍ରଭାବଶାଳୀ । ଆବେଗଧର୍ମୀ ସଂଳାପ ସଂଯୋଜନା ନାଟ୍ୟକାରଙ୍କ ଦକ୍ଷତା ପ୍ରତିପାଦନ କରେ । ଯଥା :-

କେସୋନିଆ - ଏ ଦୁନିଆରେ ଭଲ ଅଛି, ମନ୍ଦ ଅଛି, ଉଚ୍ଚ ଅଛି, ନୀଚ ଅଛି, ନ୍ୟାୟ ଅଛି, ଅନ୍ୟାୟ ଅଛି, ବିଶ୍ୱାସକର, ଏସବୁ କେବେ ବଦଳିବ ନାହିଁ ।

କାଲିଗୁଲା - ମୁଁ ସେସବୁ ବଦଳାଇ ଦେବି, ସବୁକିଛି ସମାନ କରିଦେବି । ଯେତେବେଳେ ସବୁ ବଦଳିଯିବ, ସବୁ ସମାନ ହୋଇଯିବ, ଯେତେବେଳେ ପୃଥିବୀ ଉପରକୁ ଅସମ୍ଭବ ଓହ୍ଲେଇ ଆସିବ, ଯେତେବେଳେ ଚନ୍ଦ୍ର ମୋ ହାତମୁଠାରେ ରହିବ, ସେତେବେଳେ ମୋର ରୂପ ବଦଳିଯିବ, ଦୁନିଆଟା ବି ନୂଆ ହୋଇଯିବ । ସେତେବେଳେ ମଣିଷ ଆଉ ମରିବ ନାହିଁ । ସେତେବେଳେ ମଣିଷ ଶାନ୍ତି ପାଇବ ।

କେସୋନିଆ - (ଚିତ୍କାର କରି) ହେଲେ ପ୍ରେମ ? ଭଲପାଇବା ?

(ସମ୍ରାଟ, ପ୍ରଥମ ଅଙ୍କ, ଦ୍ୱିତୀୟ ପ୍ରକାଶ, ୧୯୮୦, ପୃ ୨୧)

ଅନ୍ୟ ଏକ ଦୃଷ୍ଟାନ୍ତ :-

କେସୋନିଆ - କଥାଟା ସେମିତି କିଛି ନୁହେଁ । କାଲିଗୁଲା ଗୋଟାଏ ନୂଆ ପୁରସ୍କାରର ବ୍ୟବସ୍ଥା କରୁଛନ୍ତି ।

ସେରିଆ - ପୁରସ୍କାର ? ବୁଝି ପାରିଲି ନାହିଁ ।

କେସୋନିଆ - ଯେଉଁଲୋକ ସବୁଠୁ ବେଶୀ ନିଷ୍ଠାପର ଭାବରେ କାଲିଗୁଲାଙ୍କ ଜାତୀୟ ବେଶ୍ୟାଳୟକୁ ଯାଉଥିବ, ସେଇ ଲୋକ ଏ ପୁରସ୍କାର ପାଇବ । ନିଷ୍ଠାପର କାର୍ଯ୍ୟପାଇଁ ରାଷ୍ଟ୍ରୀୟ ପୁରସ୍କାର ।

ସେରିଆ - ଚମତ୍କାର ପରିକଳ୍ପନା !

କେସୋନିଆ - ହଁ ଚମତ୍କାର ପରିକଳ୍ପନା, ପ୍ରତିମାସ ବେଶ୍ୟାଳୟର ଖାତାଦେଖି ଯିଏ ସବୁଠୁ ବେଶୀଥର ବେଶ୍ୟାଳୟକୁ ଯାଉଥିବ, ତାକୁ ହିଁ ଏ ପୁରସ୍କାର ପାଇଁ ବଛାଯିବ । ଖାଲି ସେତିକି ନୁହେଁ, ପୁରସ୍କାର ଘୋଷଣା କରାଯିବାର ବାରମାସ ଭିତରେ ଯଦି କେହି ଏ ପୁରସ୍କାର

ଗ୍ରହଣ ନକରେ, ତେବେ ତାକୁ ନିର୍ବାସନ କିମ୍ବା ପ୍ରାଣଦଣ୍ଡ ଦିଆଯିବ ।

(ସମ୍ରାଟ - ଦ୍ୱିତୀୟ ଅଙ୍କ, ଦ୍ୱିତୀୟ ପ୍ରକାଶ, ୧୯୮୦, ପୃ-୩୭, ୩୮)

ଚରିତ୍ର ଚିତ୍ରଣ ଦୃଷ୍ଟିରୁ କୌଣସି ଚରିତ୍ର ଅଙ୍କନରେ ଦୁର୍ବଳତା ପରିଲକ୍ଷିତ ହୁଏନାହିଁ । ନାଟକର ମୁଖ୍ୟ ନାୟକ କାଲିଗୁଲାଙ୍କ ପ୍ରଚଣ୍ଡ କ୍ଷମତାଲିପ୍ସା ଓ କ୍ରୋଧାଗ୍ନିଭରା ଜୀବନର ଗତିଶୀଳତା ଯେପରି ଯଥାରୀତିରେ ଅଙ୍କିତ ହୋଇଛି, ଠିକ୍ ସେହିପରି ମୁଖ୍ୟ ନାୟିକା କେସୋନିଆଙ୍କ ପ୍ରେମ ଓ ସୌନ୍ଦର୍ଯ୍ୟବୋଧଭରା ଜୀବନଚର୍ଯ୍ୟା ସଜୀବଭାବେ ଅଙ୍କିତ ହୋଇଅଛି । ଏହାଛଡ଼ା ସେରିଆ, ସିପିଓ ଓ ହେଲିକନ୍ ଆଦିଙ୍କ ଚରିତ୍ର ସହାୟକ ଚରିତ୍ରଭାବେ ଯଥାରୀତିରେ ଚିତ୍ରିତ ହୋଇଅଛି । ନାଟକର ଉତ୍କଣ୍ଠା ନିଶ୍ଚିତଭାବେ ଆରମ୍ଭରୁ ଶେଷଯାଏ ଦର୍ଶକକୁ ଧରିରଖିବାରେ ସମର୍ଥ ହୋଇପାରିଛି । ନାଟ୍ୟକାର ବିଶ୍ୱଜିତ୍ ଏପ୍ରକାର କାହାଣୀ ଚୟନ କରି, ଓଡ଼ିଆରେ ନାଟ୍ୟରୂପାନ୍ତର କରି ଯେପରି ଭାବେ ସାଫଲ୍ୟର ବୈଜୟନ୍ତୀ ଉଡ଼ାଇ ଦେଇ ଯାଇଛନ୍ତି, ସେଥିନିମନ୍ତେ ସେ ଯେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ, ଏଥିରେ ସନ୍ଦେହ ନାହିଁ ।

## ରାଜନୈତିକ ପଟ୍ଟଭୂମିରେ ନାଟକ 'ବୃତ୍ତେ'

ବୃତ୍ତେ (୧୯୮୧) :- ବର୍ଣ୍ଣାଡଶ'ଙ୍କ 'ଅନ୍ ଦି ରକ୍ସ୍' ନାଟକକୁ ଆଧାର କରି ବିଶ୍ୱଜିତ୍ ଦାସଙ୍କ ନାଟକ 'ବୃତ୍ତେ' ରଚିତ । ନାଟ୍ୟକାରଙ୍କର ଏହି ନାଟକ ସଂପର୍କରେ ସୂଚନାରୁ ଯାହା ଜଣାଯାଏ - ଆମ ଦେଶର ସମସାମୟିକ ରାଜନୈତିକ ଜୀବନ କୌଣସି ନୂତନ ବୈପ୍ଳବିକ ପରିବର୍ତ୍ତନ ମଧ୍ୟରେ ଗତି ନ କରି ଏକା ପ୍ରକାର ଚିହ୍ନାଚରିତ ବୃତ୍ତିଗତ ବ୍ୟବସାୟ ଭଳି କେତେକ ମୁଷ୍ଟିମେୟ ରାଜନୀତିଜ୍ଞମାନଙ୍କ ଇଙ୍ଗିତରେ ପରିଚାଳିତ । ଗଣତନ୍ତ୍ରର ଦୁହାଇଦେଇ ଏଇ ତଥାକଥିତ ଜନସେବକ ରୂପୀ ରାଜନୀତିଜ୍ଞମାନେ ଦେଶବାସୀଙ୍କ ଆଗରେ ସେମାନଙ୍କ ପୁରାତନ ଅଭିନୟର ପୁନରାବୃତ୍ତି କରି ଚାଲିଛନ୍ତି ।

ରାଜନୈତିକ ପଟ୍ଟଭୂମିରେ ନାଟକର ଗଣ୍ଠି ଦଣ୍ଡାୟମାନ । ତେଣୁ ରାଜନୀତିର ଛକାପଞ୍ଝାରେ ସମାଜ କିପରି ଅବକ୍ଷୟଗ୍ରସ୍ତ, ଗଣତନ୍ତ୍ରର ମୂଲ୍ୟବୋଧ କିପରି ନିମ୍ନଗାମୀ, ତାହା ନାଟକ 'ବୃତ୍ତେ'ରେ ସଜୀବ ଭାବରେ ଅଙ୍କିତ ହୋଇଅଛି । ନାଟକର କଥାବସ୍ତୁ ସେହି ରାଜନୀତିର ଅବକ୍ଷୟଗ୍ରସ୍ତ ଚିତ୍ରକୁ ହିଁ ସୂଚିତ କରିଛି । ସଂପ୍ରତି ଯେମିତି ଭାଷଣ ସର୍ବସ୍ୱ ହୋଇଯାଇଛି ରାଜନୀତିର ପ୍ରେକ୍ଷାପଟ । ବିରୋଧୀଦଳଙ୍କ ସଭାସମିତି, ବେକାର ଯୁବକମାନଙ୍କ ଆନ୍ଦୋଳନକୁ ଦମନ କରିଦେବାକୁ ପ୍ରଧାନମନ୍ତ୍ରୀ ଚାହୁଁଥିଲାବେଳେ ବ୍ରିଗେଡ଼ିୟର୍ ସେପରି ପଦକ୍ଷେପରୁ ବିରତ ହେବାକୁ ଦୃଢ଼ ପରାମର୍ଶ ଦେଇଛନ୍ତି ।

ସାଂପ୍ରତିକକାଳରେ ରାଜନୀତିରେ ଗଣତାନ୍ତ୍ରିକ ମୂଲ୍ୟବୋଧ ହ୍ରାସ ପାଇ ଚାଲିଥିବାବେଳେ ନେତାମାନେ ଅବକ୍ଷୟର କାରଣ ଜାଣିବାକୁ ପ୍ରସ୍ତୁତ ନୁହଁନ୍ତି । ରାଜନୀତି କରିବାକୁ ହେଲେ ଭଲକାମ ବଦଳରେ ମନ୍ଦକାମ ହିଁ କରିବାକୁ ପଡ଼ିବ, ବାଜେକଥା ହିଁ ବାରମ୍ବାର ଉଚ୍ଚାରଣ କରିବାକୁ ହେବ, ତେବେ ଯାଇ ବିପଦଠାରୁ ଦୂରରେ ରହିହେବ । ଏ ପ୍ରକାର ରାଜନୈତିକ ଚିନ୍ତା ଚେତନାରେ ହିଁ ପ୍ରଧାନମନ୍ତ୍ରୀ ସଦାସର୍ବଦା ମଗ୍ନ ରହିଛନ୍ତି । ରାଜନୀତିର ପଶାପାଲିରେ, ଗୋଟିଚାଳନାରେ ବ୍ୟସ୍ତ ରହି ପ୍ରଧାନମନ୍ତ୍ରୀ ନିଜ ପରିବାରର ଦାୟିତ୍ୱ ତୁଲାଇ ପାରିନାହାନ୍ତି । ପରିବାର ପ୍ରତି ସଜାଗ ଦୃଷ୍ଟି ନ ଦେଇପାରିବାରୁ ପତ୍ନୀ, କନ୍ୟା ଓ ପୁତ୍ର ନିହାତି ସ୍ୱେଚ୍ଛାଚାରୀ ହୋଇ ନିଜ ନିଜ ବାଟରେ ଉଦ୍‌ଭ୍ରାନ୍ତ ହୋଇପଡ଼ିଛନ୍ତି । କିନ୍ତୁ ପ୍ରଧାନମନ୍ତ୍ରୀ ତାଙ୍କ ପାରିବାରିକ ବିଶୃଙ୍ଖଳାକୁ ଶାନ୍ତ କରିପାରି ନାହାନ୍ତି । ଛାତ୍ରନେତା, ଶ୍ରମିକନେତା, ତରୁଣୀ, ସମାଜସେବୀ, ବୃଦ୍ଧ, ସ୍ୱାଧୀନତା ସଂଗ୍ରାମୀ ଯିଏ ଯେତେ ଶ୍ରେଣୀର ପ୍ରତିନିଧି ଆସିଛନ୍ତି ଦାବୀ ଜଣାଇବାକୁ ସମସ୍ତଙ୍କୁ କେବଳ ଆଶ୍ୱାସନା ହିଁ ଦେଇଛନ୍ତି । କିନ୍ତୁ କାର୍ଯ୍ୟ ସମ୍ପନ୍ନ ନିମନ୍ତେ ସେ ଗୁରୁତ୍ୱ ଦିଅନ୍ତିନାହିଁ । ସେ ଭାବନ୍ତି ରାଜନୀତି ତାଙ୍କର ପେଷା, ତାଙ୍କର କ୍ୟାରିୟର୍, ରାଜନୀତିର ରଥଚକ ତଳେ କେତେ ନେତା, କେତେ ଏକନିଷ୍ଠ ସେବକ ପେଶିହୋଇ ମାଟିରେ ମିଶିଗଲେଣି ! ସେ ବି ଦିନେ ଯିବେ ।

'ବୃତ୍ତେ' ନାଟକରେ ମିଳିତ ସରକାର ଗଠିତ ହୋଇଛି । ସନାତନ ପାର୍ଟି ଓ ଗଣଜାଗରଣ ପାର୍ଟି ମିଳିତ ଭାବରେ ସରକାର ଗଠନ କରିଛନ୍ତି । ଉଭୟ ଦଳର ନିର୍ବାଚିତ ନେତାମାନେ ମନ୍ତ୍ରୀ ହେବାକୁ ଆଶାୟୀ ଏବଂ ସେଥିନିମନ୍ତେ ଆରମ୍ଭ ହୋଇଛି ତୁମୁଳ ସଂଘର୍ଷ । ମନ୍ତ୍ରୀ, ନେତା, ବ୍ୟବସାୟୀ ସମସ୍ତେ ଦେଶକୁ ଲୁଟ୍ କରିବାରେ ଲାଗିଛନ୍ତି । ତେଣୁ ଜନସାଧାରଣଙ୍କର ଗଣତନ୍ତ୍ର ଶାସନ ଉପରୁ କ୍ରମଶଃ ଆସ୍ଥା ତୁଟିଯାଏ । ପ୍ରଧାନମନ୍ତ୍ରୀ ଏବଂ ମନ୍ତ୍ରୀ ଚୌଧୁରୀଙ୍କ ମଧ୍ୟରେ କ୍ଷମତା ରାଜନୀତିକୁ ନେଇ ଆରମ୍ଭ ହୁଏ ସଂଘର୍ଷ । ନେତାମାନେ ନାନାବିଧ ଦୁର୍ନୀତିରେ ବୁଡ଼ିରହି ଜନସେବା ଭୁଲିଯାଆନ୍ତି । ରାଜ୍ୟରେ ଯଥେଚ୍ଛାଚାର ବଢ଼ିଚାଲେ । ବେକାରୀ ବଢ଼ିଚାଲନ୍ତି । ଅଶାନ୍ତିର କୁହେଳିରେ କୁହୁଳୁଥାନ୍ତି ନିରୀହ ଜନସାଧାରଣ । କୁଶଳୀ ନାଟ୍ୟକାର ବିଶ୍ୱଜିତ୍ ଦାସ ଦେଶର ଏହି ଅବକ୍ଷୟଗ୍ରସ୍ତ ରାଜନୈତିକ ଚିତ୍ରକୁ ଅତ୍ୟନ୍ତ ନିଛକ ଭାବରେ ଅଙ୍କନ କରିଛନ୍ତି 'ବୃତ୍ତେ' ନାଟକରେ । ରାଜନୀତି ଦଳର ନେତାଠାରୁ ଆରମ୍ଭ କରି ଛାତ୍ରନେତା, ଶ୍ରମିକନେତା, ନାରୀନେତ୍ରୀ, ସମାଜସେବୀ, ସ୍ୱାଧୀନତା ସଂଗ୍ରାମୀ, ବ୍ୟବସାୟୀ, ପୋଲିସ୍ ସମସ୍ତେ ପାଲଟିଛନ୍ତି ନାଟକର ଚରିତ୍ର ।

ଦେଶସେବା ନାମରେ ବ୍ୟକ୍ତି ସ୍ୱାର୍ଥ ନିମନ୍ତେ ସମସ୍ତେ ବ୍ୟସ୍ତ । ଗଣତନ୍ତ୍ରର ମୂଲ୍ୟବୋଧ ଯେତେ ହ୍ରାସ ପାଇଲେ ବି, ସମାଜର ଅବସ୍ଥା ଯେତେ ଶୋଚନୀୟ ହେଲେ ବି କାହାଠି

ଜାଗରଣ ନାହିଁ । ଗୋଟିଏ ବୃତ୍ତରେ ସଂଗୀତର ଧ୍ୱନି ଶୁଭୁଛି - 'ଆଜି ଜାଗିଛି ଏ ଦେଶ ଜାଗିଛି ।' କିନ୍ତୁ ତାର ମୂଲ୍ୟ କିଛି ନାହିଁ । କେବଳ ଏକ ପ୍ରହସନ ମାତ୍ର ।

ଏହିପରି ଏକ ସାଂପ୍ରତିକ ରାଜନୈତିକ ଚିତ୍ରକୁ ଆଧାର କରି ରଚିତ ହୋଇଛି ବିଶ୍ୱଜିତ୍‌ଙ୍କର ଏହି ସଫଳ ନାଟକ 'ବୃତ୍ତେ' । ବିଦେଶୀ ନାଟକକୁ ଆଧାର କରି ବିଶ୍ୱଜିତ୍ ଦାସ ଏହି ନାଟକ ରଚନା କରିଥିଲେ ମଧ୍ୟ ଭାରତର ରାଜନୈତିକ ପ୍ରେକ୍ଷାପଟକୁ ଏଥିରେ ଚିତ୍ରଣ କରି ଭାରତର ସଚେତନ ଜନତାଙ୍କ ଦୃଷ୍ଟି ଆକର୍ଷଣ କରି ସେ ତାଙ୍କର ନାଟ୍ୟରଚନାର ମହାନ୍ ଭୂମିକା ସଂପାଦନ କରିଅଛନ୍ତି ।

## ବିଶ୍ୱଜିତ୍ ଦାସଙ୍କ 'ପାପୀ'ର ନେପଥ୍ୟରୁ ବର୍ଣ୍ଣାଡ଼ଶଙ୍କ ଭାବୋଚ୍ଛ୍ୱାସ

ବିଶ୍ୱବିଖ୍ୟାତ ନାଟ୍ୟକାର ଜର୍ଜ ବର୍ଣ୍ଣାଡଶ'ଙ୍କ 'ଡେଭିଲ୍‌ସ ଡିସାଇପ୍ଲ' ଅବଲମ୍ବନରେ ବିଶ୍ୱଜିତ୍ ଦାସଙ୍କ 'ପାପୀ' ନାଟକ ରଚିତ ବୋଲି 'ପାପୀ' ନାଟ୍ୟଗ୍ରନ୍ଥର ଅଗ୍ରଲେଖରେ - 'ପାପୀ ସଂପର୍କରେ' ଶିରୋନାମରେ ନିଜେ ନାଟ୍ୟକାର ବିଶ୍ୱଜିତ୍ ଦାସ ସ୍ୱୀକାର କରିଅଛନ୍ତି । 'ଡେଭିଲ୍‌ସ ଡିସାଇପ୍ଲ' ଅବଲମ୍ବନରେ 'ପାପୀ' ରଚିତ ହୋଇଥିଲେ ମଧ୍ୟ 'ପାପୀ'ରେ ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ମୌଳିକ ଚିନ୍ତାଚେତନାର ଆଲେଖ୍ୟ ସହିତ ନୂତନ ପ୍ରୟୋଗର ଉଚ୍ଛ୍ୱାସ ଉର୍ଦ୍ଧ୍ୱାୟିତ ହୋଇଅଛି । ଅର୍ଥ ଓ ସମ୍ପତ୍ତିକୁ ନେଇ ଏକ ପାରିବାରିକ କାହାଣୀ ସହିତ ଏକ ସୈନ୍ୟବାହିନୀର ଅମାନୁଷିକ ଘଟଣାର ସମନ୍ୱୟରେ ଗଢ଼ିଉଠିଛି ବିଶ୍ୱଜିତ୍ ଦାସଙ୍କ ନାଟକ 'ପାପୀ'(୧୯୮୨) ।

ରାଜଦ୍ରୋହ ଅପରାଧରେ ସୁଦର୍ଶନ ପଟ୍ଟନାୟକଙ୍କ ବଡ଼ଭାଇ ଶଙ୍କର୍ଷଣ ପଟ୍ଟନାୟକଙ୍କୁ ଫାଶୀ ଦିଆଯିବା ପରେ ସୁଦର୍ଶନ ପଟ୍ଟନାୟକ ଶଯ୍ୟାଶାୟୀ ହୋଇ ଶେଷରେ ମୃତ୍ୟୁ ବରଣ କରିଅଛନ୍ତି । ମୃତ୍ୟୁ ପୂର୍ବରୁ ସେ ତାଙ୍କର ସମସ୍ତ ଅର୍ଥ ଓ ସମ୍ପତ୍ତିକୁ ପତ୍ନୀ ସାବିତ୍ରୀ, ଜ୍ୟେଷ୍ଠପୁତ୍ର ରାଜେନ୍ଦ୍ର କୁମାର ପଟ୍ଟନାୟକ ଓ କନିଷ୍ଠ ପୁତ୍ର ବ୍ରଜେନ୍ଦ୍ର କୁମାର ପଟ୍ଟନାୟକଙ୍କ ନାମରେ କିଏ କେତେ ଅଂଶ ପାଇବ, ଉଇଲ୍ କରିଦେଇ ଯାଇଛନ୍ତି । ଶଙ୍କର୍ଷଣ ପଟ୍ଟନାୟକଙ୍କ ଅବୈଧ ସନ୍ତତି ନୀରୁର ଭରଣ ପୋଷଣ ଏବଂ ତାର ଭବିଷ୍ୟତ ଦାୟିତ୍ୱ ଗ୍ରହଣ କରିବାକୁ ମଧ୍ୟ ଉଇଲ୍‌ରେ ଉଲ୍ଲେଖ ରହିଛି । ଉଇଲ୍‌ରେ କନିଷ୍ଠ ପୁତ୍ର ବ୍ରଜେନ୍ଦ୍ର ପାଞ୍ଚ ହଜାର ଟଙ୍କା ପାଇବା କଥା ଏବଂ ତାର ବିବାହ ଉପଲକ୍ଷେ ସିନ୍ଧୁକରେ ଥିବା ଅଳଙ୍କାର ଉପହାର ପାଇବା କଥା ଉଲ୍ଲେଖ ଥିବାବେଳେ ତାଙ୍କ ପତ୍ନୀ ସାବିତ୍ରୀଙ୍କ ନାମରେ ଦଶ ହଜାର ଟଙ୍କା ଗଚ୍ଛିତ ରହିବ ଏବଂ ସେ ତାହାର ସୁଧ ଟଙ୍କାରେ ଭରଣ ପୋଷଣ କରିବେ ବୋଲି ଉଲ୍ଲେଖ ରହିଛି । ଏକଥା ଜାଣିବାପରେ ସୁଦର୍ଶନଙ୍କ ପତ୍ନୀ ସାବିତ୍ରୀ ଉତ୍‌କ୍ଷିପ୍ତ ହୋଇ ଉଠିଛନ୍ତି ଏବଂ ସେ ଉଇଲ୍ ଠିକ୍

ହୋଇନାହିଁ ବୋଲି ଓକିଲଙ୍କ ନିକଟରେ ଯୁକ୍ତି ବାଢ଼ିଛନ୍ତି । କିନ୍ତୁ ଶଙ୍କରପୁରଠାରେ ଥିବା ଦୁଇମହଲା ପୈତୃକ କୋଠାଘର ଏବଂ ଜମିବାଡ଼ି ସମେତ ସମସ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତି ଜ୍ୟେଷ୍ଠପୁତ୍ର ରାଜେନ୍ଦ୍ରକୁ ଦାନ କରିଛନ୍ତି ବୋଲି ଉଇଲ୍‌ରେ ଉଲ୍ଲେଖ ରହିଛି ।

ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ବିଷୟରେ ଚର୍ଚ୍ଚା ଚାଲିଥିବାବେଳେ ଏହି ପରିବାରର ଦୀକ୍ଷାଗୁରୁ ସ୍ୱପ୍ନାନନ୍ଦ ଆଚାର୍ଯ୍ୟ ଉପସ୍ଥିତ ହୋଇ ଏ ଘଟଣାରେ ହସ୍ତକ୍ଷେପ କରିଛନ୍ତି ।

ନାଟକର ଅନ୍ୟ ଏକ ଚରିତ୍ର ହେଲେ ସ୍ୱପ୍ନାନନ୍ଦଙ୍କ ନବ ବିବାହିତା ପତ୍ନୀ ମୋହିନୀ । ନାଟକର ଗତିଚକ୍ରରେ ମୋହିନୀ ନାଟକର ମୁଖ୍ୟ ନାୟିକା ଭୂମିକା ଗ୍ରହଣ କରିଛି ଏବଂ ତାଙ୍କୁ ମାଧ୍ୟମ କରି ନାଟକ ଗତିଶୀଳ ହୋଇଉଠିଛି । ସୁଦର୍ଶନଙ୍କ ଜ୍ୟେଷ୍ଠପୁତ୍ର ରାଜେନ୍ଦ୍ର ଓରଫ୍ ରାଜୁ ଏକ ଗୁଣ୍ଡା, ବଜାରୀ, ଲଫଙ୍ଗା ବା ସଇତାନ୍ ଭାବେ ଲୋକମାନଙ୍କ ଦ୍ୱାରା ଘୃଣିତ ହେଉଥିବାବେଳେ ନିଜ ଜନ୍ମଦାତ୍ରୀ ସାବିତ୍ରୀଙ୍କ ଦ୍ୱାରା ସେ ବାରମ୍ବାର ଭର୍ତ୍ସିତ ହୋଇଅଛି ।

ଅନ୍ୟପକ୍ଷରେ ସୈନ୍ୟବାହିନୀର ଅଫିସର୍‌ମାନେ ବିଦ୍ରୋହୀ ଜନତାର ନେତୃବର୍ଗଙ୍କୁ ଖୋଜି ଖୋଜି ଶାସ୍ତିବିଧାନ କରୁଅଛନ୍ତି । ସେମାନେ ଖୋଜିଖୋଜି ଆସି ସ୍ୱପ୍ନାନନ୍ଦ ଆଚାର୍ଯ୍ୟଙ୍କ ଘରେ ପହଞ୍ଚି ସ୍ୱପ୍ନାନନ୍ଦଙ୍କୁ ଗିରଫ କରିବାକୁ ଚାହାନ୍ତେ - ସେ ସମୟରେ ସ୍ୱପ୍ନାନନ୍ଦ ଘରେ ଅନୁପସ୍ଥିତ ଥିବାବେଳେ ରାଜୁ (ରାଜେନ୍ଦ୍ର ପଟ୍ଟନାୟକ)ଙ୍କୁ ଆବିଷ୍କାର କରିଛନ୍ତି ଓ ସେହି ରାଜୁକୁ ସ୍ୱପ୍ନାନନ୍ଦ ମନେକରି ବାନ୍ଧି ନେଇ ଯାଇଛନ୍ତି । ରାଜୁକୁ ଫାଶୀ ଦିଆ ହୋଇଯିବ ବୋଲି ମୋହିନୀ ଭୟଭୀତ ହୋଇ ସ୍ୱପ୍ନାନନ୍ଦଙ୍କୁ ଘଟଣାଟି ଜଣାଇ ଦିଅନ୍ତେ ସ୍ୱପ୍ନାନନ୍ଦ ରାଜୁକୁ ଫାଶୀରୁ ରକ୍ଷା କରିବାକୁ ଘରୁ ବାହାରି ଯାଇଛନ୍ତି । ତଥାପି ମୋହିନୀ ତହିଁରେ ନୀରବ ରହି ପାରି ନାହାନ୍ତି । ସେ ରାଜୁକୁ ଦେଖା କରିବା ପାଇଁ ଜେଲ୍ ଫାଟକ ପାଖକୁ ଯାଇ ଦେଖା କରିଛନ୍ତି ଏବଂ ବିଚାର ଚାଲିଥିବାବେଳେ ମୋହିନୀ ଉଚ୍ଚସ୍ୱରରେ ପ୍ରକୃତ ସତ୍ୟର ଦ୍ୱାର ଖୋଲିଦେଇ କହିଛନ୍ତି ଯେ ଏ ମୋର ସ୍ୱାମୀ ସ୍ୱପ୍ନାନନ୍ଦ ନୁହନ୍ତି ଏ ହେଉଛନ୍ତି ରାଜେନ୍ଦ୍ର ପଟ୍ଟନାୟକ । କଥାର ପ୍ରକୃତ ସତ୍ୟାସତ୍ୟକୁ ନ ଦେଖି ଆସାମୀକୁ ୧୨ଟା ସମୟରେ ଫାଶୀ ଦେବାକୁ ସମସ୍ତ ବନ୍ଦୋବସ୍ତ ସ୍ଥିର ହୋଇଯାଇଛି । ରାଜୁ ଫାଶୀରେ ଝୁଲିବାକୁ ଥିବା ସମୟରେ ଦୁଇ ମିନିଟ୍ ପୂର୍ବରୁ ସ୍ୱପ୍ନାନନ୍ଦ ପହଞ୍ଚି ନିଜର ପ୍ରକୃତ ପରିଚୟ ଦେବା ସଙ୍ଗେ ସଙ୍ଗେ ରାଜୁକୁ ଫାଶୀରୁ ମୁକୁଳାଇବାକୁ ସକ୍ଷମ ହୋଇପାରିଛନ୍ତି । ତା'ପରେ ଏକ ଆନନ୍ଦ ଉଲ୍ଲାସ ପରିବେଶ ଭିତରେ ନାଟକର ଯବନିକା ନଇଁ ଆସିଛି ।

ତିନିଅଙ୍କ ବିଶିଷ୍ଟ ଏହି ନାଟକର ପ୍ରଥମ ଅଙ୍କ ଏବଂ ଦ୍ୱିତୀୟ ଅଙ୍କରେ କୌଣସି ଦୃଶ୍ୟ ବିଭାଜନ ନ ଥିବାବେଳେ ତୃତୀୟ ଅଙ୍କରେ କେବଳ ଦୁଇଟି ଦୃଶ୍ୟସଜ୍ଜା ରହିଅଛି ।

ବସ୍ତୁବାଦୀ ସମାଜ ବ୍ୟବସ୍ଥାରେ ଅର୍ଥ, ଧନ ସମ୍ପତ୍ତି କିପରି ମଣିଷକୁ ବଶୀଭୂତ କରେ ତାହାର ଏକ ନିଛକ ଚିତ୍ର ଅଙ୍କନ କରିବା ସହିତ ପାପ ପୁଣ୍ୟର ଦୋଛକୀରେ ପ୍ରକୃତ ସତ୍ୟ କେମିତି ଆତ୍ମପ୍ରକାଶ କରେ ତାହାର ଏକ ପ୍ରତ୍ୟକ୍ଷ ଚିତ୍ର ନାଟକ 'ପାପୀ'ରେ ପରିବେଷିତ ହୋଇଅଛି । ପ୍ରତିଟି ଚରିତ୍ର ମଧ୍ୟରେ ଆତ୍ମଗୋପନ କରିଥିବା ଭିନ୍ନ ପ୍ରବୃତ୍ତି ଜାଗ୍ରତ ହୋଇଛି । ରାଜୁ ପରି ଖାମ ଖିଆଲ୍, ବଜାରି, ଲଫଙ୍ଗା ବୋଲି ଚିତ୍ରିତ ହୋଇଥିବା ବ୍ୟକ୍ତିର ଅନ୍ତର୍ନିହିତ ଉଦାର ମାନବିକତା, ସ୍ପଷ୍ଟବାଦିତା ଏବଂ ପ୍ରେମପୂର୍ଣ୍ଣ ହୃଦୟର ନିର୍ଯ୍ୟାସ ପ୍ରତିପାଦିତ ହୋଇଥିବାବେଳେ, ରାଜୁକୁ ଘୃଣା କରୁଥିବା ମୋହିନୀ ପରବର୍ତ୍ତୀ ସମୟରେ ରାଜୁପ୍ରତି ଗଭୀର ଆନ୍ତରିକତା ପ୍ରଦର୍ଶନ କରି କିପରି କାରୁଣ୍ୟରେ ଭିଜି ଯାଇଛି, ତା'ର ଏକ ଜୀବନ୍ତ ଚିତ୍ର ରୂପାୟିତ ହୋଇଅଛି । ରାଜୁର ତ୍ୟାଗ, ଅନ୍ୟପାଇଁ ଜୀବନ ଦାନ କରିବାର ମହନୀୟତାରେ ମୋହିନୀ କେବଳ ବିସ୍ମିତ ହୋଇନାହାନ୍ତି, ରାଜୁକୁ ଫାଶୀଦଣ୍ଡରୁ ରକ୍ଷାକରିବାକୁ ନିଜେ ଅଣ୍ଟାଭିଡ଼ି ବାହାରି ଯାଇଛନ୍ତି । ପାତ୍ରାଭିମୁଖୀ ସଂଳାପ ସହିତ ଯଥାର୍ଥ ଦ୍ୱନ୍ଦ ଓ ଉତ୍କଣ୍ଠା ରକ୍ଷାକରି ନାଟ୍ୟକାର ବିଶ୍ୱଜିତ୍ 'ପାପୀ' ନାଟକକୁ ଯଥାର୍ଥ ଗତିଶୀଳ କରାଇବା ସଙ୍ଗେ ସଙ୍ଗେ ଚରିତ୍ରଗୁଡ଼ିକୁ ଯଥାରୀତିରେ ଚିତ୍ରଣ କରିଅଛନ୍ତି । ନାଟକର ମୁଖ୍ୟନାୟକ ରାଜୁ (ରାଜେନ୍ଦ୍ର ପଟ୍ଟନାୟକ) ଚରିତ୍ରର ବୈଶିଷ୍ଟ୍ୟ ସ୍ୱତନ୍ତ୍ର ଭାବେ ପ୍ରତିପାଦିତ ହୋଇଥିଲାବେଳେ ମୋହିନୀ ଓ ସ୍ୱପ୍ନାନନ୍ଦଙ୍କ ସାଧୁତା ଓ କୋମଳତା ବେଶ୍ ସଜୀବ ଭାବେ ଅଙ୍କିତ ହୋଇଅଛି । ସାବିତ୍ରୀଙ୍କର ଚରିତ୍ରରେ ମହନୀୟତା ପ୍ରକଟିତ ନ ହେଲେ ମଧ୍ୟ ନାଟକର ସଂଘାତ ସୃଷ୍ଟିକରିବାରେ ଚରିତ୍ରଟି ସହାୟକ ହୋଇପାରିଛି । କିନ୍ତୁ ନାଟ୍ୟକାର ବିଶ୍ୱଜିତ୍ ସାବିତ୍ରୀ ଚରିତ୍ରଟିକୁ ନାଟକର ଶେଷ ଦୃଶ୍ୟ ପର୍ଯ୍ୟନ୍ତ ସକ୍ରିୟ କରି ନ ରଖି ନାଟକର ଅଧାରୁ ଅନ୍ତର୍ହିତ କରାଇ ଦେଇଛନ୍ତି ।

ନାଟକରେ ଯଥାର୍ଥ ନାଟକୀୟତା ପ୍ରକଟିତ ହୋଇଛି ଏବଂ ନାଟକର ଯବନିକା ପତନ ପର୍ଯ୍ୟନ୍ତ ଉତ୍କଣ୍ଠା ରକ୍ଷା କରାଯାଇ ପାରିଛି । ତାହାହିଁ ନାଟକର ଓ ନାଟ୍ୟକାରଙ୍କର ଚରମ ସଫଳତାର ପରିଚୟ ପ୍ରତିପାଦନ କରେ । ସମଗ୍ର ନାଟକରେ ନୃତ୍ୟ ସଂଗୀତ ଆଦିର ସମାବେଶ ନ ଥିଲେ ମଧ୍ୟ ନାଟକର ପ୍ରଭାବଶାଳୀ କଥାବସ୍ତୁ, ଉଚ୍ଚକୋଟୀର ପ୍ରୟୋଗ ପରିପାଟୀ ଓ ଯଥାର୍ଥ ନାଟକୀୟ ଭାବାବେଗ ନିମନ୍ତେ ନାଟକ 'ପାପୀ' ଯେ ସଫଳତାର ଶୀର୍ଷରେ ଉପନୀତ ହୋଇପାରିଛି, ଏଥିରେ ସନ୍ଦେହ ନାହିଁ ।

## ନାଟକ 'ଧରାସ୍ୱର୍ଗ'ରେ ବିଶ୍ୱଜିତ୍‌ଙ୍କ ସୁନାର ଭାରତବର୍ଷର ସ୍ୱପ୍ନ

ନାଟ୍ୟକାର ବିଶ୍ୱଜିତ୍ ଦାସ ତାଙ୍କର ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ 'ବହ୍ନି' ସ୍ୱାଧୀନତାର ପରବର୍ତ୍ତୀ କାଳରେ ରଚନା କରିଥିଲେ ମଧ୍ୟ ତହିଁରେ ରହିଛି ପରାଧୀନ ଭାରତବର୍ଷର ଚିତ୍ର ଏବଂ ମୁକ୍ତି ସଂଗ୍ରାମର ଚିତ୍ର । କିନ୍ତୁ 'ଧରାସ୍ୱର୍ଗ' ହେଉଛି ସ୍ୱାଧୀନତାର ୪୦ ବର୍ଷ ପରର

ରଚନା । ଏଥିରେ ଚିତ୍ରିତ ହୋଇଛି ସ୍ୱାଧୀନତା ପରେ ଦେଶରେ ବୃଦ୍ଧି ପାଇଥିବା ଦାରିଦ୍ର୍ୟ, ଭ୍ରଷ୍ଟାଚାର, ବ୍ୟଭିଚାର, କଳଙ୍କିତ ରାଜନୀତି, ଗୁଣ୍ଡାଗିରି, ଅଶିକ୍ଷା, ଅସଭ୍ୟତା ଓ ଅପସଂସ୍କୃତିର ନିଛକ ଚିତ୍ର । ନାଟ୍ୟକାରଙ୍କ ଭାଷାରେ - 'ସ୍ୱାଧୀନତାର ଦୀର୍ଘ ୪୦ ବର୍ଷ ଅତିବାହିତ ହୋଇଥିଲେ ମଧ୍ୟ ଆମର ପେଟକୁ ମୁଠାଏ ଭାତ ନାହିଁ ବା ପିନ୍ଧିବାକୁ କନା ଖଣ୍ଡିଏ ନାହିଁ । ବାସ କରିବାକୁ ଉପରେ ନିଜର ବୋଲି ଚାଳିଖଣ୍ଡେ ନାହିଁ । କାହିଁକି ଆମେ ସ୍ୱାଧୀନ ହୋଇଥିଲେ ?'

(ଧରାସ୍ୱର୍ଗ - ୧୯୯୮, ଦ୍ୱିତୀୟ ଅଙ୍କ, ଏକାଦଶ ଦୃଶ୍ୟ, ପୃ-୧୦୮)

ବିଶ୍ୱଜିତ୍ ଦାସଙ୍କ ନାଟକ 'ଧରାସ୍ୱର୍ଗ' (୧୯୯୮)ରେ ବିକାଶର ପଥରୋଧ କରୁଥିବା ଦାରିଦ୍ର୍ୟର ଚିତ୍ର ଅତ୍ୟନ୍ତ ନିଛକ ପରିପାଟୀରେ ଅଙ୍କିତ ହୋଇଅଛି । ନାଟ୍ୟକାର ନିଜେ ତାଙ୍କର ନାଟ୍ୟଗ୍ରନ୍ଥ 'ଧରାସ୍ୱର୍ଗ'ର ପ୍ରାକ୍‌କଥନରେ ଉଲ୍ଲେଖ କରିଛନ୍ତି - "ଦାରିଦ୍ର୍ୟ ଜାତୀୟତାର କଳଙ୍କ, ମାନବିକତାର ଅଭିଶାପ, ବ୍ୟକ୍ତିତ୍ୱର ବିକାଶ ପଥରେ ଘୋର ଅନ୍ତରାୟ । + + + ପ୍ରକୃତରେ ସ୍ୱାଧୀନତାର ସ୍ୱାଦ ଆମ ଭାରତବାସୀ ଅର୍ଦ୍ଧଶତାବ୍ଦୀ ଭିତରେ ପାଇ ନାହାନ୍ତି । ଦେଶବାସୀ ଭୋକ ଅନଟନରେ ନୟାନ୍ତ ହୋଇଗଲେଣି । ମୁଷ୍ଟିମେୟ ବିତ୍ତଶାଳୀ ବ୍ୟକ୍ତିଙ୍କ ହାତରେ ଶାସନର ଡୋର । ସାଧାରଣ ଲୋକଙ୍କ ସୁଖ ସୁବିଧା ଦେଖିବାକୁ କାହାରି ସମୟ ନାହିଁ ।

ଏପରି ଦୁର୍ଦ୍ଦିନରେ ମୁଁ ସ୍ୱପ୍ନ ଦେଖୁଛି ସୁନାର ଭାରତ । କଳ୍ପନା କରୁଛି ଆଗାମୀ ଦିନର ସ୍ୱର୍ଣ୍ଣଭୂମି । ନାଟକର ଚରିତ୍ର ମାଧ୍ୟମରେ ସୃଷ୍ଟି କରିଛି ମୋ ସ୍ୱପ୍ନର 'ଧରାସ୍ୱର୍ଗ' ।"

ସ୍ୱାଧୀନତା ପରେ ଦାରିଦ୍ର୍ୟ ଓ କଳଙ୍କିତ ରାଜନୈତିକ ଦୃଶ୍ୟର ପୃଷ୍ଠଭୂମିରେ ରଚିତ ନାଟକ 'ଧରାସ୍ୱର୍ଗ'ରେ ନାଟ୍ୟକାର ବିଶ୍ୱଜିତ୍ ଦାସ ସାଂପ୍ରତିକ ସମାଜର ରାଜନୈତିକ ବ୍ୟକ୍ତିତ୍ୱ ତଥା ମନ୍ତ୍ରୀ ନେତାମାନଙ୍କର ଅମାନୁଷିକ କାର୍ଯ୍ୟକଳାପ ଓ ଯଥେଚ୍ଛାଚାରରେ କିପରି ଗରିବ ଜନତା ଜଡ଼ସଡ଼, ପୁଞ୍ଜିପତି ମନ୍ତ୍ରୀନେତାଙ୍କ ସହ ସମ୍ମୁଖୀନ ହୋଇ ସେମାନଙ୍କଠାରୁ ନିଜର ଦାବୀ ଆଦାୟ କରିନେବା ପାଇଁ ନକ୍‌ସଲାଇଟ୍ ଆନ୍ଦୋଳନ କିପରି ତେଜି ଉଠିଛି - ତାହାର ଜୀବନ୍ତ ଚିତ୍ର ଉପସ୍ଥାପନ କରିଅଛନ୍ତି ।

ନାଟକରେ କଥାବସ୍ତୁ ପ୍ରଲମ୍ବିତ ନୁହେଁ । ଆମରି ବଳୟରେ ଆତଯାତ ହେଉଥିବା ଚରିତ୍ରମାନେ ହିଁ ଏହି ନାଟକର ଚରିତ୍ର । ପାରମ୍ପରିକ ଧାରାରେ ନାଟକ ରଚିତ ହୋଇଥିଲେ ମଧ୍ୟ ନାଟକର ବାର୍ତ୍ତା ଓ ଆଦର୍ଶ - ଖୁବ୍ ଉଚ୍ଚମାନର ।

ଇତିହାସରେ ସ୍ନାତକୋତ୍ତର ଶିକ୍ଷା ଶେଷକରି ଗବେଷଣାରତ ରେଣୁ ସଙ୍କୋଟ ଷ୍ଟେସନ୍

ମାଷ୍ଟର ନଳିନୀକାନ୍ତ ବାବୁଙ୍କର କନ୍ୟା । ବେଶ୍ ସ୍ପଷ୍ଟବାଦୀ ଓ ମାନବୀୟ ମୂଲ୍ୟବୋଧରେ ବିଶ୍ୱାସ କରୁଥିବା ଏକ ନୀତିବାନ୍ ମହିଳା ଏବଂ ଆଇ.ଏ.ଏସ୍ ଅଫିସର ବିଶ୍ୱମୋହନଙ୍କ ଧର୍ମପତ୍ନୀ । ରେଣୁ ନାଟକର ମୁଖ୍ୟ କେନ୍ଦ୍ର ବିନ୍ଦୁ । ଗରିବ ସପନିର ଝିଅ ଯମୁନା ସୁନ୍ଦରୀ ଓ ତା'ର କଣ୍ଠସ୍ୱର ସୁମଧୁର । ବାପ ସପନି ସହିତ ଗୀତ ବୋଲି ଭିକ୍ଷାକରି ଜୀବନ ନିର୍ବାହ କରେ । ତାରି ରୂପ ଅନ୍ୟମାନଙ୍କ ନିମନ୍ତେ ବେଶ୍ ଆକର୍ଷଣୀୟ । ରାଜନୀତି କରୁଥିବା ଅବନିର ବଳାତ୍କାରରେ ଯମୁନା ଅନ୍ତଃସତ୍ତ୍ୱା ହୋଇ ସନ୍ତାନ ଜନ୍ମ କରିଛି । ଯମୁନାର ଏପରି ଦୁରାବସ୍ଥା ଦେଖି ରେଣୁ ସଂବେଦନଶୀଳ ଭାବରେ ତାକୁ ନିଜ ଘରେ ଆଶ୍ରୟ ଦେବା ସହିତ ଅବନୀକୁ ଡକାଇ ଯମୁନାକୁ ପତ୍ନୀ ରୂପରେ ଗ୍ରହଣ କରିବାକୁ ପରାମର୍ଶ ଦେଇଛନ୍ତି । ପ୍ରତାରକ ଅବନୀ ପ୍ରଥମେ ରେଣୁର ଉପଦେଶ ଗ୍ରହଣ କରି ନ ଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ନକ୍ସଲାଇଟ୍ ଶମ୍ଭୁର ଲାଲ୍ ଆଖିରେ ଯମୁନାକୁ ଗ୍ରହଣ କରିବାକୁ ବାଧ୍ୟ ହୋଇଛି, କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ତାକୁ ପ୍ରତାରିତ କରିଛି । ଜନସାଧାରଣ ରେଣୁକୁ ବିଧାୟିକା ହେବା ନିମନ୍ତେ ଅନୁରୋଧ କରିଛନ୍ତି । ନିଜେ ବିଧାୟକ ନିମନ୍ତେ ପ୍ରତିଦ୍ୱନ୍ଦିତା କରୁଥିବା ଅବନୀ ରେଣୁକୁ ଗୁଣ୍ଡା ଲଗାଇ ହାତଗୋଡ଼ ବାନ୍ଧି ଏକ ଅନ୍ଧାର ଗୃହରେ ନିକ୍ଷେପ କରିବାକୁ ଯିବା ପୂର୍ବରୁ ପରିଆର ସ୍ତ୍ରୀ ଝାମ୍ପି ଆସି ଠେଙ୍ଗା ପ୍ରହାର କରି ରେଣୁକୁ ମୁକୁଳାଇଛି । ନିର୍ବାଚନରେ ଅବନୀ ରେଣୁଙ୍କ ଠାରୁ ପରାଜିତ ହୋଇଛି । ରେଣୁ ଦଳର ନେତ୍ରୀ ସାଜି ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇ ସତ୍ୟ, ନ୍ୟାୟ ଓ ସାଧୁତାରେ ରାଜ୍ୟ ଶାସନ ସହିତ ଶିକ୍ଷା ଓ ସ୍ୱାସ୍ଥ୍ୟର ବିକାଶ ଘଟାଇବା ସହିତ ରାଜ୍ୟରୁ ଗରିବୀ ହଟାଇବାକୁ ଉଦ୍‌ବୋଧନ ଦେଇଛନ୍ତି । ରେଣୁ ସାଧାରଣ ଜନତାକୁ ଉଦ୍‌ବୋଧନ ଦେଇ କହିଛନ୍ତି 'ଦେଶ ଓ ଜାତିର ମର୍ଯ୍ୟାଦା ଉପରକୁ ଟେକିବାକୁ ହେଲେ ଅଜସ୍ର ପରିଶ୍ରମ କରିବା ଦରକାର । ସତ୍ ଓ ସାହସ ଦରକାର । ନିଜ ଗୋଡ଼ରେ ନିଜେ କିପରି ଠିଆ ହେବାକୁ ହେବ ଶିଖିବା ଦରକାର । ଅନ୍ୟ କାହାକୁ ଦୋଷ ନ ଦେଇ ନିଜେ ନିଜକୁ ଦୋଷ ଦେବା ଶିଖନ୍ତୁ । ସେଇଠି ସବୁ ସମାଧାନ ହେବ । ଆମକୁ ତେବେ ଯାଇ ରାମରାଜ୍ୟ ବେଳର ସୁଖ ସ୍ୱାଚ୍ଛନ୍ଦ୍ୟ ମିଳିପାରିବ । ଆମେ ସୁଖୀ ହୋଇ ପାରିବା । ଦେଶକୁ ଆଗେଇ ନେଇ ପାରିବା' ।

(ଧରାସ୍ୱର୍ଗ - ୧୯୯୮, ଏକାଦଶ ଦୃଶ୍ୟ, ପୃ-୧୦୮)

ଏହା ବିଶ୍ୱଜିତ୍ ଦାସଙ୍କ ରଚିତ ଅନ୍ୟତମ ସାମାଜିକ ନାଟକ 'ଧରାସ୍ୱର୍ଗ'ର ସଂକ୍ଷିପ୍ତ କଥାବସ୍ତୁ ହେଲେ ମଧ୍ୟ ଏଥିରେ ଥିବା ଚିତ୍ର ଚରିତ୍ର ତଥା ନାଟକୀୟ ଗତିର ସାବଲୀଳତା ନାଟକଟିକୁ କେବଳ ପ୍ରଭାବଶାଳୀ କରିନାହିଁ, ଜନମାନସରେ ସତ୍ୟ, ନ୍ୟାୟ, ଧର୍ମ ଓ ସାଧୁତାର ମହାନ୍ ବାର୍ତ୍ତା ଉଦ୍‌ଘୋଷଣ କରିଅଛି ।

ନାଟକ 'ଧରାସ୍ୱର୍ଗ'ରେ ରେଣୁ ଓ ବିଶ୍ୱମୋହନଙ୍କ ସାଧୁତା ଓ ମହାନତା, ଯମୁନା

ଓ ସପନିର ଦାରିଦ୍ର୍ୟ, ନେତା ବୋଲାଉଥିବା ଭ୍ରଷ୍ଟାଚାରୀ ଅବନୀଙ୍କ ଭ୍ରଷ୍ଟାଚାର, ନକ୍ସାଲାଇଟ୍ ଶମ୍ଭୁର ବିଦ୍ରୋହୀ ମାନସିକତା ସାଙ୍ଗକୁ ଝୁମ୍ପିପରି ନାରୀର ଉଗ୍ର ସ୍ପଷ୍ଟବାଦିତା ନାଟକର ନାଟକୀୟତାକୁ ପ୍ରତି ମୁହୂର୍ତ୍ତରେ ଭିନ୍ନ ଭିନ୍ନ ମୋଡ଼ ଦେବା ସଙ୍ଗେ ସଙ୍ଗେ ଯଥାର୍ଥ ଉତ୍କଣ୍ଠା ରକ୍ଷା କରାଯାଇପାରିଛି । ନାଟକରେ ଉଭୟ ଅନ୍ତର୍ଦ୍ୱନ୍ଦ୍ୱ ଓ ବହିର୍ଦ୍ୱନ୍ଦ୍ୱ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ନାଟକର ଉତ୍କର୍ଷ ଏକ ମିଳନାତ୍ମକ ବିନ୍ଦୁରେ ପହଞ୍ଚି ପାରିଛି ।

ସାଙ୍ଗିତିକତା ଓ ରସଚର୍ଯ୍ୟା ନାଟକର ଦୁଇଟି ମହନୀୟ ଉପାଦାନ । 'ଧରାସ୍ୱର୍ଗ'ରେ ସଂଗୀତ ସଂଯୋଜିତ ହୋଇନଥିଲେ ମଧ୍ୟ ସଂଗୀତ ସଂଯୋଜନା ନିମନ୍ତେ ଉପଯୁକ୍ତ ପରିସର ସୃଷ୍ଟି କରାଯାଇଅଛି । ସାଧାରଣ ଭାବେ କରୁଣ ରସ ଓ ହାସ୍ୟରସର ପରିବେଷଣ କରାଯାଇଛି । ଯମୁନା ଚରିତ୍ର ମାଧ୍ୟମରେ କାରୁଣ୍ୟର ଘନଘଟା ସୃଷ୍ଟି ହୋଇଥିବା ବେଳେ ସଂଳାପରେ ହାସ୍ୟରସର ପ୍ରାବଲ୍ୟ ପରିଦୃଷ୍ଟ ହୁଏ । 'ଧରାସ୍ୱର୍ଗ'ର ପ୍ରତିଟି ଚରିତ୍ର ବେଶ୍ ସଜୀବ ଭାବେ ଅଙ୍କିତ ହୋଇଅଛନ୍ତି । ରେଣୁ, ବିଶ୍ୱମୋହନ, ଯମୁନା, ପରିଆ ଓ ଶମ୍ଭୁ ଆଦି ପ୍ରଧାନ ଚରିତ୍ରଗୁଡ଼ିକ ଯଥାରୀତିରେ ଚିତ୍ରିତ ହୋଇଥିବାବେଳେ ଖଳନାୟକ ଅବନୀର ଚରିତ୍ର ଏବଂ ଝୁମ୍ପି ପରି ଏକ ନିଆରା ନାରୀଚରିତ୍ର ଚିତ୍ରଣରେ ନାଟ୍ୟକାର ବିଶ୍ୱଜିତ୍ ତାଙ୍କର ନାଟ୍ୟ ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦନ କରିଅଛନ୍ତି । ଏତଦ୍ ଭିନ୍ନ ପାଣୁଆ, ନଳିନୀ, ସପନି, ବାଜିଆ, ବସନ୍ତ, ସମର୍, ସେଠଜୀ ଓ ବସିଆ ଆଦି ଛୋଟଛୋଟ ଚରିତ୍ର ଗୁଡ଼ିକ ମଧ୍ୟ ଯଥାର୍ଥ ଅଙ୍କିତ ହୋଇଅଛନ୍ତି । 'ଧରାସ୍ୱର୍ଗ'ରେ ବରେନ୍ଦ୍ର ଚରିତ୍ର ଏକ ସଂପୂର୍ଣ୍ଣ ଭିନ୍ନଭାବର ଚରିତ୍ର । ନାଟ୍ୟକାର ସେହି ବରେନ୍ଦ୍ର ଚରିତ୍ର ମାଧ୍ୟମରେ ବହୁ ମୂଲ୍ୟବୋଧଭିତ୍ତିକ ଚିରନ୍ତନ ସତ୍ୟର ଅବତାରଣା କରିପାରିଛନ୍ତି ।

ବରେନ୍ଦ୍ର ନଳିନୀ ବାବୁଙ୍କର ପୁତ୍ର ଏବଂ ରେଣୁର ଭାଇ । ସେନା ବାହିନୀରୁ ଫେରିବା ପରେ ସାମାନ୍ୟ ମାନସିକ ଭାରସାମ୍ୟ ହ୍ରାସ ହେବାର ମନେହେଉଥିଲେ ମଧ୍ୟ ନାଟ୍ୟକାର ବରେନ୍ଦ୍ରର ସଂଳାପରେ ବହୁ ଅପ୍ରିୟ ସତକଥାର ସଂଯୋଜନା କରିଅଛନ୍ତି ।

'ଧରାସ୍ୱର୍ଗ'ର ସଂଳାପଗୁଡ଼ିକ ଯେପରି ପାତ୍ରାଭିମୁଖୀ ସେହିପରି ଚିତ୍ତସ୍ପର୍ଶୀ । ସମାଜର ଅବକ୍ଷୟ, ଦାରିଦ୍ର୍ୟ ଓ ଭ୍ରଷ୍ଟାଚାର ସଂପର୍କରେ ସଂଳାପ ଗୁଡ଼ିକ ଯେପରି ତୀକ୍ଷ୍ଣ, ବିଶ୍ୱମୋହନ, ରେଣୁ, ନଳିନୀ ଓ ବରେନ୍ଦ୍ରଙ୍କ ମୁଖରେ ସଂଯୋଜିତ ସଂଳାପମାନ ସେହିପରି ସତ୍ୟରେ ମହିମାନ୍ୱିତ ତଥା ଉଚ୍ଚମାନର ।

ଯଥା :- ବିଶ୍ୱ - ଯିଏ ଇତିହାସ ସୃଷ୍ଟି କରିଚାଲେ ସବୁବେଳେ, ସିଏ ଆଜି ଇତିହାସର ଇତିବୃତ୍ତ ହରେଇବ କିମିତି ?

ରେଣୁ - ମାନେ ?

ବିଶ୍ୱ - ତମେ ଥିସିସ୍ ଲେଖି [illegible] ରିସର୍ଚ୍ଚ କରିଛ ... ଆଚ୍ଛା କୁହତ ଗରିବ କେଉଁଠି ଭଲରେ ରହିଛି

ରେଣୁ - ତେବେ ମାନବିକତା ଦୃଷ୍ଟିରୁ?

ବିଶ୍ୱ - ଇତିହାସ ସହିତ ମାନବିକତାର ସମ୍ବନ୍ଧ ରହେନି। ଇତିହାସ ବାସ୍ତବତା ଉପରେ ଗଢ଼ା। ଆଉ ମାନବିକତା ପାଖରେ ବାସ୍ତବତା ଜଡ଼ ହୋଇଯାଏ।

(ଧରାସ୍ୱର୍ଗ, ୧୯୯୮ ଦ୍ୱିତୀୟ ଅଙ୍କ, ଷଷ୍ଠ ଦୃଶ୍ୟ, ପୃ-୮୩)

ସେହିପରି ଅନ୍ୟ ଏକ ଦୃଷ୍ଟାନ୍ତ ନିଆଯାଇପାରେ

'ସମର - + + + ଆମେ ଆସ୍ତେ ଆସ୍ତେ ଜୀବନରେ ଶାନ୍ତିକାମୀ ହୋଇପାରିବା, .....ଅନର୍ଥର ରାସ୍ତା ଆମର କାମ୍ୟ ନୁହେଁ।

ରେଣୁ - କିନ୍ତୁ ଆପଣଙ୍କ ଅବନୀବାବୁଙ୍କ ପରି ଲୋକମାନେ ଏ ପାର୍ଟି ଭିତରେ ଥିବା ପର୍ଯ୍ୟନ୍ତ ଶାସନ ମହତ୍ତ୍ୱ ରହିବନି ବାପା?

ସମର - ଅବନୀବାବୁ କ'ଣ କଲେ?

ରେଣୁ - ସେ ଗୋଟିଏ ଗରିବ ଝିଅର ଇଜ୍ଜତ ନେଇ....

ବିଶ୍ୱ - ସେହି ଝିଅ ଯମୁନାର କୋଳରେ ଗୋଟିଏ ଅବାଞ୍ଛିତ ପୁଅ ଦେଇ ଏଇନେ ମାନୁ ନାହାନ୍ତି।

ସମର - ଏଇଟା ଅତ୍ୟନ୍ତ ଅନ୍ୟାୟ। ତମେ ବିଶ୍ୱ ଅବନୀବାବୁଙ୍କୁ ଶାସ୍ତି ବ୍ୟବସ୍ଥା କରୁନା?

ବିଶ୍ୱ - ଆପଣଙ୍କ ଶାସନ ବାଧା ସୃଷ୍ଟି କରୁଛି?

ସମର - ନୋ, ନୋ, ହି ମଷ୍ଟ ବି ବୁକ୍ଡ୍। ତମେ ବିଶ୍ୱ, ଆକ୍ସନ୍ ନିଅ, ଆମ ଶାସନର ବଦ୍‌ନାମ୍ କରିବାକୁ ଦିଆଯିବନି, ମୁଁ ନିଜେ ହେଲେ ବି ମତେ ଛାଡ଼ିବନି।

(ଧରାସ୍ୱର୍ଗ, ଦ୍ୱିତୀୟ ଅଙ୍କ, ଚତୁର୍ଥ ଦୃଶ୍ୟ, ପୃ - ୭୫)

ସବୁ ଦୃଷ୍ଟିକୋଣରୁ ବିଶ୍ୱଜିତ୍ ଦାସଙ୍କ ରଚିତ ନାଟକ 'ଧରାସ୍ୱର୍ଗ' ଯେ ଏକ ସଫଳ ପାରମ୍ପରିକ ନାଟକ, ଏଥିରେ ସନ୍ଦେହ ନାହିଁ।

ବିଶ୍ୱଜିତ୍ ଦାସ ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପ୍ରମୁଖ ସ୍ୱର। ତାଙ୍କ ନାଟକ ଗୁଡ଼ିକରେ ନୂତନତା, ଭିନ୍ନ ଭିନ୍ନ ଭାବକଳ୍ପ ଓ ଉନ୍ନତ ଚିନ୍ତାଚେତନାର ପରିସ୍ଫୁରଣ ଘଟିଥାଏ। ତାଙ୍କର ଏହି ଆଲୋଚ୍ୟ ନାଟକ 'ଧରାସ୍ୱର୍ଗ' ଏକ ପାରମ୍ପରିକ ନାଟ୍ୟ ପର୍ଯ୍ୟାୟର ନାଟକ ହୋଇଥିଲେ ହେଁ ଏହାର ମହତ୍ତର ପୃଷ୍ଠଭୂମି ଓ ଚିରନ୍ତନ ଭାବ ଚେତନା ଯେ ଅଭିନବ ପରିପାଟୀରେ ଉର୍ଦ୍ଧ୍ୱମୁଖୀ ହୋଇଅଛି, କହିବାରେ ଦ୍ୱିଧା ନାହିଁ।

## ବିଶ୍ୱଜିତ୍‌ଙ୍କ ଅନ୍ୟତମ ଦେଶାତ୍ମବୋଧକ ନାଟ୍ୟକୃତି: ସୂର୍ଯ୍ୟୋଦୟର ପଥେ

ସ୍ୱାଧୀନତା ସଂଗ୍ରାମର ଶତବାର୍ଷିକୀ ଉପଲକ୍ଷେ ବିଶ୍ୱଜିତ୍ ପ୍ରଥମକରି ଏକ ପୂର୍ଣ୍ଣାଙ୍ଗ ନାଟକ 'ବହ୍ନି' ରଚନା କରି ପୁରସ୍କୃତ ହୋଇଥିଲେ । ସ୍ୱାଧୀନତା ସଂଗ୍ରାମ ତାର ପୃଷ୍ଠଭୂମି ଥିଲେ ହେଁ ତାହା ଏକ ମୌଳିକ ସାମାଜିକ କଥାବସ୍ତୁ ଉପରେ ଗଢ଼ି ଉଠିଥିଲା । 'ସୂର୍ଯ୍ୟୋଦୟର ପଥେ' ତାଙ୍କର ଅନ୍ୟ ଏକ ଭିନ୍ନ ସ୍ୱାଦର ଦେଶାତ୍ମବୋଧକ ନାଟକ । ଏହା ଓଡ଼ିଶା ସଂଗୀତ ମହାବିଦ୍ୟାଳୟ ପରିସରରେ ଏକ ମୁକ୍ତ ମଞ୍ଚରେ ବହୁ ସଂଖ୍ୟକ କଳାକାରଙ୍କୁ ନେଇ ବିଶିଷ୍ଟ ନାଟ୍ୟବିତ୍, ଚଳଚିତ୍ର ଅଭିନେତା ଅଜିତ୍ ଦାସଙ୍କ ସଫଳ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ସ୍ୱାଧୀନତା ସଂଗ୍ରାମର ପ୍ରତିଟି ସୋପାନର ଚିତ୍ର ଏଥିରେ ଅତ୍ୟନ୍ତ ନିଖୁଣ ଭାବରେ ଚିତ୍ରିତ ହୋଇଅଛି । ପାଇକମାନଙ୍କର ସାଧାରଣ ଜୀବନଧାରା ଠାରୁ ଆରମ୍ଭ କରି, ରାଜାଙ୍କର ପ୍ରଜା ଉପରେ ଶୋଷଣର ଚିତ୍ର, ଜୟୀ ରାଜଗୁରୁଙ୍କ ଫାଶୀଦଣ୍ଡ, ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଉପରେ ଗିରିଫଦାରୀ, ଶଶୀଭୂଷଣଙ୍କ ଦେଶପ୍ରେମର ଶିକ୍ଷାଦାନ, ଫିରିଙ୍ଗୀମାନଙ୍କର ଅକଥନୀୟ ଅତ୍ୟାଚାରର ଚିତ୍ର ଏଥିରେ ଭିନ୍ନ ଭିନ୍ନ ସୋପାନରେ ଅତ୍ୟନ୍ତ ନିଛକ ଭାବରେ ଅଙ୍କିତ ହୋଇଅଛି । ନାଟକର ଶେଷ ପର୍ଯ୍ୟାୟରେ ପିତା ସରକାରୀ କର୍ମଚାରୀ ରୁଦ୍ର ଚରଣଙ୍କର ବ୍ରିଟିଶ୍ ଶାସନ ପ୍ରତି ଆନୁଗତ୍ୟ କ୍ରମରେ ଦେଶପ୍ରେମୀ, ମୁକ୍ତି ସଂଗ୍ରାମୀ ପୁତ୍ର ସୁରେନ୍ଦ୍ରଙ୍କ ଉପରେ ଗୁଳିଚାଳନାର ଦୃଶ୍ୟ ଅତ୍ୟନ୍ତ ସଂଘାତମୟ ଓ କାରୁଣ୍ୟଭରା ହୋଇଅଛି । ଏ ଦୃଶ୍ୟ ନାଟକର ନାଟକୀୟତାକୁ ପରିବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଯଥେଷ୍ଟ ଉତ୍କଣ୍ଠାମୟ କରିପାରିଛି । 'ସୂର୍ଯ୍ୟୋଦୟର ପଥେ'ରେ ସଂଯୋଜିତ ଏହି ଅଧ୍ୟାୟଟି ବିଶ୍ୱଜିତ୍ ତାଙ୍କର ପ୍ରଥମ ଦେଶାତ୍ମବୋଧକ ନାଟକ 'ବହ୍ନି'ରୁ ଗ୍ରହଣ କରିଛନ୍ତି ଏବଂ ଏହି ଅଧ୍ୟାୟର ସଂଯୋଜନା ନାଟକ 'ସୂର୍ଯ୍ୟୋଦୟର ପଥେ'କୁ ସର୍ବତୋଭାବେ ସ୍ୱୟଂସଂପୂର୍ଣ୍ଣ କରିବାରେ ସମର୍ଥ ହୋଇପାରିଛି ।

'ସୂର୍ଯ୍ୟୋଦୟର ପଥେ' ବିଶ୍ୱଜିତ୍ ଦାସଙ୍କର ଏକ ନିଆରା ନାଟ୍ୟସୃଷ୍ଟି । ସ୍ୱାଧୀନତା ସଂଗ୍ରାମର ପୃଷ୍ଠଭୂମିରେ ବିଭିନ୍ନ ପର୍ଯ୍ୟାୟର ସଂକ୍ଷିପ୍ତ ସମାବେଶ ସହିତ ନାଟ୍ୟକାରଙ୍କ କାଳ୍ପନିକ ଚରିତ୍ର ସମାବେଶ ନାଟକଟିକୁ କରିପାରିଛି ସ୍ୱୟଂସଂପୂର୍ଣ୍ଣ ଏବଂ ପ୍ରଭାବଶାଳୀ । ସ୍ୱାଧୀନତା ସଂଗ୍ରାମ ଏବଂ ତତ୍କାଳୀନ ସମୟର ସାମାଜିକ ଚିତ୍ର, ବ୍ରିଟିଶ୍ ଶାସନର ମନ୍ତ୍ରଣା ଓ ଷଡ଼ଯନ୍ତ୍ର ସହିତ ଦେଶଦ୍ରୋହୀ କର୍ମଚାରୀ ରୁଦ୍ର ଚରଣ ଓ ଗୋବିନ୍ଦ ଆଦିଙ୍କ ଦେଶ ବିରୋଧୀ କାର୍ଯ୍ୟକ୍ରମ ନାଟକର ସଂଘାତମୟ ବାତାବରଣକୁ ପ୍ରବର୍ଦ୍ଧିତ କରିପାରିଛି । ପାତ୍ରାଭିମୁଖୀ ସଂଳାପ ସଂଯୋଜନାରେ କୁଶଳୀ ନାଟ୍ୟକାର ବିଶ୍ୱଜିତ୍ ଦାସ ଯେପରି ସିଦ୍ଧହସ୍ତ ଚରିତ୍ର ବିକାଶରେ ସେ ସେହିପରି ଧୂରୀଣ । 'ସୂର୍ଯ୍ୟୋଦୟର ପଥେ'ରେ ସଂଯୋଜିତ ପ୍ରତିଟି ସଂଳାପ ପାତ୍ରାଭିମୁଖୀ

ଏବଂ ଉନ୍ନତ ପରିପାଟୀର । ସେହିପରି ନାଟକରେ ସଂଶ୍ଳିଷ୍ଟ ପ୍ରତ୍ୟେକ ଚରିତ୍ର ଯଥାରୀତିରେ ଅଙ୍କିତ । ଜୟୀରାଜଗୁରୁ, ବୃଦ୍ଧା, ପରିଆ, ସଦେଇ, ବରଜୁ, ମହନୀ, ରାଜା, ଅନୁଚର, ଗୋଇନ୍ଦା, ଶଶୀଭୂଷଣ, ଗୋପବନ୍ଧୁ ଦାସ, ସଦାନନ୍ଦ, ରୁଦ୍ର ଚରଣ, ସୌଦାମିନୀ, ଶାନ୍ତି, ସୁମତୀ, ସୁରେନ୍ଦ୍ର, ଅଜିତ୍, ହାମିଲଟନ୍, ଗୋବିନ୍ଦ, ସର୍ଜେଣ୍ଟ, ସୁଦର୍ଶନ, ମଧୁ, ହରିଶ୍, ମେଜର୍ ଫ୍ଲେଚର, ହାରକୋଟ୍ ଓ ମେଲ୍‌ଭିଲ୍ ଆଦିଙ୍କ ଚରିତ୍ର ନାଟକର ପ୍ରୟୋଜନାନୁଯାୟୀ ଯଥାରୀତିରେ ଚିତ୍ରିତ ହୋଇଅଛନ୍ତି । ନାଟକରେ ଯାତ୍ରୀ ଚରିତ୍ରଟି ଏକ ସ୍ୱତନ୍ତ୍ର ଚରିତ୍ର । ଭିନ୍ନ ଭିନ୍ନ ପର୍ଯ୍ୟାୟରେ ତାର ଯଥାର୍ଥ ଉପସ୍ଥାପନା ନାଟକକୁ ଗତିଶୀଳ କରିବାରେ ସହାୟକ ହୋଇଅଛି । ସଂଗୀତ ସଂଯୋଜନା ନାଟକର ଅନ୍ୟ ଏକ ପ୍ରୟୋଜନୀୟ ଉପାଦାନ । 'ସୂର୍ଯ୍ୟୋଦୟର ପଥେ'ରେ କେତେଗୁଡ଼ିଏ ଦେଶାତ୍ମବୋଧକ ସଂଗୀତର ସଂଯୋଜନା କରାଯାଇ ନାଟକର ଯଥାର୍ଥ ସାଂଗୀତିକତା ଦିଗ ପ୍ରତି ଦୃଷ୍ଟି ଦିଆଯାଇଅଛି । ନାଟକର ରଚନା ଏବଂ ପ୍ରୟୋଗ ଉଭୟ ଦୃଷ୍ଟିକୋଣରୁ 'ସୂର୍ଯ୍ୟୋଦୟର ପଥେ' ଯେ ଏକ ସଫଳ ତଥା ସ୍ୱତନ୍ତ୍ର ପରିପାଟୀର ନାଟକ - ଏଥିରେ ସଂନ୍ଦେହ ନାହିଁ । ଏତେଗୁଡ଼ାଏ ଚରିତ୍ର ସମାବେଶରେ ଏପରି ଏକ ନାଟକ ରଚନାକରି ନାଟ୍ୟକାର ବିଶ୍ୱଜିତ୍ ଦାସ ତାଙ୍କ ନାଟ୍ୟ ପ୍ରତିଭାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିପାରିଛନ୍ତି ଏବଂ ଏଥିନିମନ୍ତେ ସେ ଯେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ସ୍ୱୀକାର କରିବାରେ ଦ୍ୱିଧାନାହିଁ ।

## ବିଶ୍ୱଜିତ୍ ଦାସଙ୍କ 'ନୂଆଜହ୍ନ'ରେ ନାଟକୀୟ ମୂଲ୍ୟବୋଧ

ଆଦିବାସୀଙ୍କ ଜୀବନଚର୍ଯ୍ୟା, ସେମାନଙ୍କ ଜୀବନର ଇତିବୃତ୍ତ ଏବଂ ତାଙ୍କର ଶିକ୍ଷା ଓ ବିକାଶ ଉପରେ ଆଧାରିତ ବହୁ ରଚନା କେବଳ ଓଡ଼ିଆ ସାହିତ୍ୟରେ ନୁହେଁ ଅନ୍ୟାନ୍ୟ ଭାରତୀୟ ସାହିତ୍ୟରେ ମଧ୍ୟ ବେଶ୍ ବିସ୍ତାରିତ ଭାବେ ରଚିତ ହୋଇଛି । ଓଡ଼ିଶାରେ ପ୍ରଫେସର ଖଗେଶ୍ୱର ମହାପାତ୍ର, ଡକ୍ଟର ସୀତାକାନ୍ତ ମହାପାତ୍ର, ଭାଗିରଥୀ ନେପାକ, ହାଡ଼ିବନ୍ଧୁ ମିର୍ଦ୍ଧା ଓ ମନ୍ମଥନାଥ କୁଣ୍ଡୁ ପ୍ରମୁଖ ବହୁ ସାରସ୍ୱତ ସ୍ରଷ୍ଟା ଓଡ଼ିଶାର ଆଦିମ ଅଧିବାସୀଙ୍କ ସମ୍ପର୍କରେ ଲେଖନୀ ଚାଳନା କରିଥିଲେ ମଧ୍ୟ ବିଶିଷ୍ଟ କଥାଶିଳ୍ପୀ ଜ୍ଞାନପୀଠ ପୁରସ୍କାର ବିଜେତା ଗୋପୀନାଥ ମହାନ୍ତି ଏହି ଆଦିବାସୀଙ୍କ ଜୀବନ କାହାଣୀ ଓ ତାଙ୍କ ସାମାଜିକ ତଥା ଧର୍ମୀୟ ପରମ୍ପରାକୁ ନେଇ ବହୁ ଉଚ୍ଚମାନର ଗ୍ରନ୍ଥ ରଚନା କରି ଯଶସ୍ୱୀ ହୋଇଅଛନ୍ତି ।

ସେହିପରି ପ୍ରଖ୍ୟାତ ନାଟ୍ୟକାର ବିଶ୍ୱଜିତ୍ ଦାସ ଆଦିବାସୀଙ୍କ ଜୀବନ ଏବଂ ଗଣତାନ୍ତ୍ରିକ ନିର୍ବାଚନ ପଦ୍ଧତିରେ ଆଦିବାସୀଙ୍କୁ ଆୟୁଧ କରି କିପରି ଅନ୍ୟ ନେତା, ମନ୍ତ୍ରୀ, ସାମ୍ବାଦିକ ତଥା ବୁଦ୍ଧିଜୀବୀମାନେ ନିଜର ବ୍ୟକ୍ତିଗତ ଫାଇଦା ଉଠାଉଛନ୍ତି, ସେ ସମ୍ପର୍କରେ ଏକ ଲୋକପ୍ରିୟ ତଥା ପ୍ରଭାବଶାଳୀ ନାଟକ 'ନୂଆଜହ୍ନ' ରଚନା କରି ଯଶସ୍ୱୀ ହୋଇ ପାରିଛନ୍ତି ।

ସରଳ ଆଦିବାସୀମାନଙ୍କୁ ପ୍ରତାରିତ କରି କିପରି ରାଜନୈତିକ ବ୍ୟକ୍ତିମାନେ ସିଡି ଚଢ଼ିବାକୁ ଚେଷ୍ଟା କରୁଛନ୍ତି, ତାହାର ଏକ ଜୀବନ୍ତ ଚିତ୍ର ନୂଆକହ୍ନ (୧୯୯୭) ନାଟକରେ ବିଶ୍ୱଜିତ୍ ଦାସ ଚିତ୍ରଣ କରି ଏକ ଚରମ ସତ୍ୟକୁ ଉଦ୍‌ଘାଟନ କରିପାରିଛନ୍ତି ।

ନରଣଗଡ଼ ନିର୍ବାଚନ ମଣ୍ଡଳୀର ଅଧିବାସୀଙ୍କ ମଧ୍ୟରୁ ଅଧିକାଂଶ ଆଦିବାସୀ ସମ୍ପ୍ରଦାୟର । ସେମାନେ ଖୁବ୍ ସରଳ ତଥା ଅଭାବୀ । ପଥୁରିଆ ମାଟି ଓ ଜଳାଶୟର ଅଭାବ କୃଷିକର୍ମ ବ୍ୟାହତ କରେ । ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରି ଜୀବିକା ନିର୍ବାହ କରନ୍ତି ସେମାନେ । ସମୟକ୍ରମେ ଏହି ନିର୍ବାଚନ ମଣ୍ଡଳୀର ରାଜନୈତିକ ବାତାବରଣ ଖୁବ୍ ସରଗରମ୍ ହୋଇଛି । ମହାରାଜ ରୁଦ୍ରନାରାୟଣ ସ୍ୱରାଜ ଦଳର ନେତା, ନରଣଗଡ଼ର ବିଧାୟକ ଏବଂ ଜଣେ ମନ୍ତ୍ରୀ ହୋଇ ଦୀର୍ଘ ତିରିଶ ବର୍ଷ ଧରି ଶାସନରେ ଥାଇ ବି ଅଞ୍ଚଳ ପାଇଁ କିଛି ମଙ୍ଗଳକର କାର୍ଯ୍ୟ କରି ନାହାନ୍ତି ବରଂ ସେ ଅଞ୍ଚଳର ନିରୀହ ଆଦିବାସୀଙ୍କୁ ଶୋଷଣ କରୁଥିବା କଣ୍ଟ୍ରାକ୍ଟର ଆଦି ଦୁଷ୍ଟ ଦୁର୍ନୀତିଖୋର ଲୋକମାନଙ୍କୁ ସାହାଯ୍ୟ କରିଛନ୍ତି । ତେଣୁ ଏପରି ଏକ ଦୁର୍ନୀତିଗ୍ରସ୍ତ ନେତାଙ୍କୁ ପରିବର୍ତ୍ତନ କରି ଏକ ନୂତନ ଯୁବଶ୍ରେଣୀୟ ସାହସୀ, ସ୍ପଷ୍ଟବାଦୀ ନେତାଟିଏ ବାଛିଦେବା ନିମନ୍ତେ ପ୍ରଚେଷ୍ଟା ହୋଇଛି । ଫଳରେ ଜନଜାଗରଣ ଦଳ ପକ୍ଷରୁ ସ୍ପଷ୍ଟବାଦୀ, ନିର୍ଭୀକ ଆଦିବାସୀ ଯୁବକ ସୋନାରାମ୍ ମାଝୀଙ୍କୁ ରୁଦ୍ରନାରାୟଣଙ୍କ ବିରୁଦ୍ଧରେ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାକୁ ଠିଆ କରାଯାଇଛି ଏବଂ ନିର୍ବାଚନରେ ସୋନାରାମ ବିପୁଳ ସମର୍ଥନରେ ବିଜୟଲାଭ କରିଛି । ବିଜୟ ପରେ ଜଣେ ଯୁବ ଆଦିବାସୀ ନେତା ଭାବରେ ସୋନାରାମକୁ ମଧ୍ୟ ମନ୍ତ୍ରୀ କରାଯାଇଛି ।

ସୋନାରାମ ମନ୍ତ୍ରୀ ହେବାପରେ ସେ ଅଞ୍ଚଳର ଆଦିବାସୀ ମାନଙ୍କ ମଧ୍ୟରେ ଏକ ନୂତନ ଉନ୍ମାଦନା ଓ ଆନନ୍ଦର ହିଲ୍ଲୋଳ ବହିଯାଉଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସେ ଆନନ୍ଦ ନିରାନନ୍ଦରେ ପରିଣତ ହୋଇଛି । ସରଳ, ନିରୀହ ଯୁବକ ସୋନାରାମ ମନ୍ତ୍ରୀ ହେବାପରେ ସେ ରାଜନୈତିକ ଜଟିଳତା ଓ ପ୍ରଶାସନିକ ଜାଲରେ ଏପରି ଭାବେ ଛନ୍ଦିହୋଇ ଯାଇଛି ଯେ ସେ ନିଜର ନିଜସ୍ୱ ମୌଳିକ ଚିନ୍ତାଚେତନାକୁ ମଧ୍ୟ ହରାଇ ବସିଛି । ମିଥ୍ୟା କ୍ଷମତାର ଜାଲରେ ଛନ୍ଦିହୋଇ ଅଣନିଶ୍ୱାସୀ ହୋଇ ପଡ଼ିଛି । ନିର୍ବାଚନ ସମୟରେ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିବାକୁ କିମ୍ବା ନିଜ ଅଞ୍ଚଳର କୌଣସି ବିକାଶମୂଳକ କାର୍ଯ୍ୟକ୍ରମ କରାଇବାକୁ ସେ ସକ୍ଷମ ହୋଇ ପାରିନାହିଁ, ବରଂ କେବଳ ସେ ଅନ୍ୟମାନଙ୍କ ଦ୍ୱାରା ବାରମ୍ବାର ପ୍ରତାରିତ ହୋଇଛି ।

ସେହି ଅଞ୍ଚଳରେ ଥିବା ମେଘନାଦ ପାହାଡ଼ ତଳେ ଥିବା ନାଗୁଣୀଗୁମ୍ଫା ଥିଲା ସେହି

ଆଦିବାସୀ ମାନଙ୍କର ପ୍ରଧାନ ପୂଜାପୀଠ, ସତେ ଯେମିତି ତାହା ଥିଲା ହୀରା, ନୀଳା, ମୋତି, ମାଣିକର ଅପୂର୍ବ ଗନ୍ତାଘର । ତାହାକୁ ରକ୍ଷା କରିବା ଥିଲା ସେହି ଆଦିବାସୀମାନଙ୍କର ପ୍ରଧାନ ଦାବି । ଏକଥା ଜାଣି ମଧ୍ୟ ସୋନାରାମ ଶାସନ ଆସନରେ ଥାଇ ବି ମେଘନାଦ ପାହାଡ଼ ଓ ନାଗୁଣୀ ଗୁମ୍ଫାକୁ ରକ୍ଷା କରି ପାରିଲା ନାହିଁ । ସେହି ମେଘନାଦ ପାହାଡ଼କୁ ଖଣିରୂପେ ଲିଜ୍ ଦିଆ ହୋଇଗଲା । ସେ ଖଣିଖୋଳା କାର୍ଯ୍ୟରେ ସେ ଅଞ୍ଚଳର ଆଦିବାସୀମାନେ ମଧ୍ୟ ନିଯୁକ୍ତ ହେଲେ ନାହିଁ । କାରଣ ଖଣି କଣ୍ଟ୍ରାକ୍ଟର ମେସିନ୍ ଲଗାଇ ପଥର କାଟିଲା । ଫଳରେ ଗରିବ ଆଦିବାସୀମାନେ କୌଣସି ଭାବେ ଉପକୃତ ହେଲେ ନାହିଁ । ସେମାନେ ଯେଉଁ ଦରିଦ୍ରକୁ ସେହି ଦରିଦ୍ର, ଅଭାବୀ ହୋଇ ରହିଗଲେ ।

ପାଞ୍ଚବର୍ଷ ପରେ ପୁଣି ଯେତେବେଳେ ନିର୍ବାଚନ ଆସିଲା ସେତେବେଳେ ପୁରୁଖା ଦୁର୍ନୀତିଗ୍ରସ୍ତ ନେତା ରୁଦ୍ରନାରାୟଣ ଆଦିବାସୀମାନଙ୍କୁ କିଛି କିଛି ମନ ଭୁଲାଣିଆ ଆର୍ଥିକ ସାହାଯ୍ୟ ଯୋଗାଇଦେବା ସଙ୍ଗେ ସଙ୍ଗେ ସୋନାରାମ ଯେ ସମ୍ପୂର୍ଣ୍ଣ ଅନଭିଜ୍ଞ ଓ ଅପାରଗ ନେତା ଏବଂ ସେ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରି ନାହିଁ ବରଂ ଆଦିବାସୀମାନଙ୍କର ପ୍ରଭୂତ କ୍ଷତି ସାଧନ କରିଛି ବୋଲି ପ୍ରମାଣିତ କରାଇ ଗ୍ରାମୀଣ ଜନସାଧାରଣଙ୍କୁ ନିଜ ଆଡ଼କୁ ଆକର୍ଷିତ କରାଇ ନେଇଛି । ତେଣୁ ସୋନାରାମ ପ୍ରାର୍ଥୀ ହୋଇ କେଉଁଠୁ ଏପରି କି ନିଜ ଗ୍ରାମ ଲୋକଙ୍କ ଠାରୁ ମଧ୍ୟ କୌଣସି ସାହାଯ୍ୟ ସହଯୋଗ ବା ସମର୍ଥନ ପାଇ ପାରିନାହିଁ । ଏପରିକି ନିଜ ଜନ୍ମଦାତ୍ରୀ ମାଆ ଓ ନିଜ ପ୍ରୀତିମୟୀ ପ୍ରେମିକା ବି ସୋନାରାମଙ୍କୁ ଦେଖି କବାଟ କିଳି ଦେଇଛନ୍ତି ।

ତା ପରେ ନିରୀହ ସୋନାରାମ ଖୁବ୍ ଭାଙ୍ଗି ପଡ଼ିଛି । ରାଜନୀତିର ପଶାପାଲିରୁ ସେ ଦୂରେଇ ଆସିବାକୁ ବ୍ୟାକୁଳ ହୋଇ ପଡ଼ିଛି । କିନ୍ତୁ ସେ ବ୍ୟାକୁଳତାକୁ ପରିହାର କରି ଆଦିବାସୀଙ୍କର ନ୍ୟାଯ୍ୟ ଦାବି ପାଇଁ ଦୃଢ଼ ପଦକ୍ଷେପ ଗ୍ରହଣ କରିବାକୁ ସୋନାରାମର ଦାଦି ଶୁକ୍ରୁ ପରାମର୍ଶ ଦେଇଛି ।

ନାଟ୍ୟକାରଙ୍କ ଭାଷାରେ : ସୋନାରାମ – ଦରକାର ନାହିଁ ସେ କୋଠା, ମୋଟର, ମଉଜ ମଜଲିସ–ମୋର କିଛି ଦରକାର ନାହିଁ । ଚୋର ଡକେଇତ ତାଙ୍କ ସଙ୍ଗେ ମିଶି ଭୋଅଟ ଲଢ଼ିବା ଦରକାର ନାହିଁ । (ତା'ପରେ ବାଷ୍ପରୁଦ୍ଧ କଣ୍ଠରେ) ମୋର ଖାଲି ଟିକିଏ ସିନିହ ଦରକାର, ଆହା ବୋଲି କହିବାର ମଣିଷର ଦରକାର । ଏଇ କୁଡ଼ିଆ ମୋ ପାଇଁ ଢେର ଦାଦି, ମାଆ ହାତରେ ମାଣ୍ଡିଆଯାଉ ମୋ ପାଇଁ ଢେର । + + +

(ପରୀ – ସୋନାରାମର ମାଆ ଆଗେଇ ଆସି ସୋନାରାମକୁ କୁଣ୍ଢାଇ ଧରି କାନ୍ଦିବାକୁ ଲାଗିଲା)

ସୋନାରାମ - ଆଉ ତୋତେ ଛାଡ଼ି କୁଆଡ଼େ ଯିବିନାହିଁ ମାଆ, ଏ ଗାଁ ଛାଡ଼ି କୁଆଡ଼େ ଯିବିନାହିଁ ।

ଶୁକ୍ରୁ - ଯିବୁ ନାଇଁ? ତୋ ବୋପ୍‌ପା ଯିବ । ଏ ଗାଁରେ ରାସ୍ତା ପକାଇବ କିଏ? ଜମିରେ ପାଣି ମଡ଼େଇବ କିଏ? ସୁନ୍ଦୁରୀ ଯୋର ଉପରେ ପୋଲ ପକେଇବ କିଏ? ତୁ । ଆଉ ଏ ମେଘନାଦ ପରବତ ଉପରୁ ଖଣିବାଲାଙ୍କୁ ତଡ଼ିବ କିଏ? ତୁ । କହିଲା କ'ଣ ନା - କୁଡ଼ିଆର ମାଣ୍ଡିଆଯାଉ ଡେର?

ସୋନାରାମ - ହେଲେ ମୁଁ କ'ଣ କରିବି ଦାଦି? ସେମାନେ ମୋତେ କିଛି କରେଇ ଦେବେ ନାହିଁ ।

ଶୁକ୍ରୁ - ଏଥର ଟାଙ୍ଗିଆଟା ସାଙ୍ଗରେ ନେଇଯିବୁ, ଯିଏ ତୋ ବାଟ ଅଟକେଇବ, ଏ ଟାଙ୍ଗିଆ ଚୋଟରେ ତା ବେକ ହାଣିଦେବୁ । ତା ରକ୍ତ ପିଇଯିବୁ । ଫାଶୀରେ ଝୁଲିବୁ । ସେଇ ଗୋଟାଏ ବାଟ ଅଛିରେ ମାହାର୍ଜା ଆମ ପାଇଁ, ସେଇ ଗୋଟେ ବାଟ ଅଛି ।

ରୂପା - ଟାଙ୍ଗିଆ ଚୋଟରେ କେତେକେତେ ମହାବଳ ବାଘକୁ ମାରିଛୁ, ଚୋର ଡକେଇତି କେତେଟାଙ୍କୁ ମାରିପାରିବୁନି?

ଶୁକ୍ରୁ - ଅନା, ଆକାଶରେ ଜହ୍ନ ହସୁଛି । ଆଉ ଦେଖ୍ ସେ ଜହ୍ନ ଆଲୁଅରେ ଏ ଟାଙ୍ଗିଆଟା କେମିତି ଝଲସୁଛି ।

ମଣିଷ ପରି ମଣିଷ ଭାବରେ ନିଜର ନ୍ୟାଯ୍ୟ ଅଧିକାର ଓ ଦାବି ଜାହିର କରିବା ପାଇଁ ଏକ ଦୃଢ଼ ଆତ୍ମବିଶ୍ୱାସ ଜନ୍ମାଇଛି ସୋନାରାମ ମନରେ - ଶୁକ୍ରୁ ।

ସୁତରାଂ ନାଟକ- 'ନୂଆଜହ୍ନ'ରେ ନିଜର ଅଧିକାର ନେଇ ଆଦିବାସୀମାନେ ବଞ୍ଚିବା ପାଇଁ ନାଟ୍ୟକାରଙ୍କର ସଫଳ ଦୃଢ଼ତାର ବାର୍ତ୍ତା ବାସ୍ତବିକ ନାଟ୍ୟକାରଙ୍କର ସର୍ବହରାଙ୍କ ବିକାଶ ନିମନ୍ତେ ଏକ ମହତ ଓ ସୁଦୂରପ୍ରସାରୀ ଚେତନା ବୋଲି ସ୍ୱୀକାର କରିବାକୁ ହେବ ।

'ନୂଆଜହ୍ନ' ନାଟକର ପ୍ରତିଟି ନାଟକୀୟ ଉପାଦାନ ଯଥାରୀତିରେ ସଂଯୋଜିତ ହୋଇଛି । ନାଟକର ପାତ୍ରାଭିମୁଖୀ ସଂଳାପ, ନାଟକୀୟ ଆବେଗ ସହିତ ଆବଶ୍ୟକୀୟ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ରକ୍ଷା କରାଯାଇ ଉପଯୁକ୍ତ ନାଟକୀୟତା ସୃଷ୍ଟି କରାଯାଇ ପାରିଛି । ଆଦିବାସୀ ସମ୍ପ୍ରଦାୟର ଜୀବନଧାରା ସହିତ ନିଜର ଅଧିକାର ପାଇଁ ଅନ୍ୟାୟ, ଅନାଚାର ଓ ଅବିଚାର ବିରୁଦ୍ଧରେ ଲଢ଼ିବାର ଚେତନା ସେମାନଙ୍କ ମନରେ ଜାଗ୍ରତ କରାଇଛନ୍ତି ନାଟ୍ୟକାର ବିଶ୍ୱଜିତ୍ । ଏତଦ୍‌ବ୍ୟତୀତ ସାମ୍ପ୍ରତିକ ରାଜନୈତିକ ପ୍ରତାରଣା ଓ ଦୁର୍ଗନ୍ଧର ଅବକ୍ଷୟମାଣ ଦୃଶ୍ୟକୁ ଅତ୍ୟନ୍ତ ଜୀବନ୍ତ ଭାବେ ଚିତ୍ରିତ କରିବା ସହିତ ଏକ ସୁସ୍ଥ ସମାଜ ପରିକଳ୍ପନାର ଚିତ୍ର ଅଙ୍କନ କରି

ନାଟ୍ୟକାର ବିଶ୍ୱଜିତ୍ ତାଙ୍କର ଯଥାର୍ଥ ନାଟକୀୟ କର୍ମ ସମ୍ପାଦନ କରିଛନ୍ତି ।

ନାଟକ 'ନୂଆଜନ୍ମ'ର ପ୍ରତିଟି ଚରିତ୍ର ଯଥାରୀତିରେ ଚିତ୍ରିତ ହୋଇଛି । ନାଟକର ମୁଖ୍ୟ ଚରିତ୍ର ସୋନାରାମ ଚରିତ୍ର ଯେପରି ନିଛକ ପରିପାଟୀରେ ଚିତ୍ରିତ ହେବା କଥା ହୋଇଥିବା ବେଳେ ନାଟକର ମୁଖ୍ୟ ଖଳନାୟକ ରୁଦ୍ର ନାରାୟଣଙ୍କ ଚରିତ୍ର ସେହିପରି ସୁନ୍ଦର ଭାବେ ଚିତ୍ରିତ ହୋଇଛି । ଦୁଷ୍ଟ ଦୁର୍ନୀତିଗ୍ରସ୍ତ ରାଜନୀତିଜ୍ଞମାନଙ୍କ ଦ୍ୱାରା ଏ ସମାଜର ନିରୀହ ଜନସାଧାରଣ ଯେପରି ଭାବେ ଶୋଷିତ ହେଉଛନ୍ତି ତାହାର ଏକ ସ୍ପଷ୍ଟଚିତ୍ର ନାଟକରେ ଅଙ୍କିତ ହୋଇଛି । ନାଟକର ମୁଖ୍ୟ ଚରିତ୍ର ଓ ଖଳ ଚରିତ୍ର ସହିତ ଶୁକ୍ରୁ ପରି ଦୃଢ଼ମନା ଚରିତ୍ର, ପ୍ରେମମୟୀ ରୂପାର ଚରିତ୍ର ଏବଂ ବାତ୍ସଲ୍ୟମୟୀ ପରୀ (ସୋନାରାମର ମାଆ) ଆଦି ପାର୍ଶ୍ୱଚରିତ୍ର ଗୁଡ଼ିକ ଯଥାରୀତିରେ ସଫଳତାର ସହ ଅଙ୍କିତ ହୋଇଛନ୍ତି ।

ଏହି ନାଟକଟି କିଛିବର୍ଷ ପୂର୍ବେ 'ମହାମନ୍ତ୍ର' ନାମରେ 'ଶତାବ୍ଦୀର କଳାକାର' ନାଟ୍ୟସଂସ୍ଥା ଦ୍ୱାରା ଅନନ୍ତ ମହାପାତ୍ରଙ୍କ ନିର୍ଦ୍ଦେଶନାରେ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ଅଭିନୀତ ହୋଇଥିଲା । ଓଡ଼ିଆ ନାଟ୍ୟ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିବାରେ ବିଶ୍ୱଜିତ୍ ଦାସଙ୍କର ଏହି ନାଟକ 'ନୂଆଜନ୍ମ' ଯେ ଯଥେଷ୍ଟ ସମର୍ଥ, ଏଥିରେ ସନ୍ଦେହ ନାହିଁ ।

## କାନ୍ତକବି ଲକ୍ଷ୍ମୀକାନ୍ତଙ୍କ 'ବୁଢ଼ାଶଙ୍ଖାରୀ'ର ମଞ୍ଚନାଟ୍ୟ ରୂପାନ୍ତର

ସତ୍ୟବାଦୀ ଯୁଗର ଯଶସ୍ୱୀ ଲେଖକ କାନ୍ତକବି ଲକ୍ଷ୍ମୀକାନ୍ତ କାବ୍ୟକବିତା, ଗଳ୍ପ, ଉପନ୍ୟାସ, ନାଟକ, ସଙ୍ଗୀତ ଆଦି ରଚନା କରି ଓଡ଼ିଆ ସାହିତ୍ୟ ସଂସ୍କୃତିକୁ ବହୁଭାବରେ ସମୃଦ୍ଧ କରି ଯାଇଛନ୍ତି । ତାଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' - ଉତ୍କଳର ଦେଶ ବନ୍ଦନା ଭାବେ ଗାନ କରାଯିବାର ମାନ୍ୟତା ପାଇଥିବାବେଳେ ବହୁ ସଂଗୀତ ତାଙ୍କର ଅଶେଷ ଲୋକପ୍ରିୟତା ଅର୍ଜନ କରିଅଛି । 'ବୁଢ଼ା ଶଙ୍ଖାରୀ' କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ଏକ ଚର୍ଚ୍ଚିତ ଲୋକପ୍ରିୟ କ୍ଷୁଦ୍ରଗଳ୍ପ । ଏହାର କଥାବସ୍ତୁ ଯେପରି ଆବେଗମୟ ସେହିପରି କାରୁଣ୍ୟଭରା । ବୁଢ଼ା ଶଙ୍ଖାରୀଟିଏ ଆସି ଜମିଦାରଙ୍କ ସୁନ୍ଦରୀ କୁଳବଧୂଙ୍କୁ ତାଙ୍କ ମନମୁତାବକ ଶଙ୍ଖା ଯୋଗାଇ ଦେଉଥାଏ । ଏହି ଶଙ୍ଖା ପିନ୍ଧାଇବା ମଧ୍ୟରେ ବୋହୂଟି ପ୍ରତି ବାତ୍ସଲ୍ୟସ୍ନେହ ଅଜାଡ଼ି ପଡ଼ିଥାଏ ଶଙ୍ଖାରୀ ବୁଢ଼ାର । ସମୟର ରଥଚକ ତଳେ ଏକ ବିପର୍ଯ୍ୟସ୍ତର ଘନଘଟା ଘଟିଯାଏ । ବୋହୂର ବରାଦ ମୁତାବକ ଆସମାନତାରା ଶଙ୍ଖା ଗଢ଼ି ଶଙ୍ଖାରୀ ଆସି ବୋହୂର ବୈଧବ୍ୟ ବେଶ ଅବଲୋଚନ କରି ମ୍ରିୟମାଣ ହୋଇପଡ଼େ । ପାଦତଳର ମାଟି ଯେମିତି ଖସିଯାଏ ତଳକୁ ତଳକୁ । ତା'ର ସବୁ ଖୁସି, ସବୁ ସ୍ନେହ ସୋହାର୍ଦ୍ଦ୍ୟ, ଆଶା ଭରସା ଧୂଳିସାତ୍ ହୋଇଯାଏ । କାନ୍ତକବିଙ୍କର ଏହିପରି ଏକ କାରୁଣ୍ୟଭରା କାହାଣୀକୁ ସଫଳ ନାଟ୍ୟ ରୂପାନ୍ତର କରିଛନ୍ତି

ନାଟ୍ୟକାର ବିଶ୍ୱଜିତ ଦାସ । ଗଳ୍ପ ବା ଉପନ୍ୟାସଟିଏକୁ ନାଟ୍ୟ ରୂପାନ୍ତର କରି ପୂର୍ଣ୍ଣାଙ୍ଗ ନାଟକଟିଏ ରଚନା କରିବା ସହଜ କଥା ନୁହେଁ । ଯଥେଷ୍ଟ ନାଟକୀୟ ପ୍ରତିଭା ନ ଥିଲେ, ନାଟ୍ୟ ଅବଦାନ, ନାଟ୍ୟ ପ୍ରୟୋଗ ସଂପର୍କରେ ଯଥେଷ୍ଟ ଜ୍ଞାନ ନ ଥିଲେ ନାଟ୍ୟ ରୂପାନ୍ତର ସଫଳ ହୁଏ ନାହିଁ । ବିଶ୍ୱଜିତ୍ ଦାସ ଜଣେ ପ୍ରତିଭାଧର ନାଟ୍ୟକାର ଏବଂ କୁଶଳୀ ନାଟ୍ୟ ନିର୍ଦ୍ଦେଶକ ହୋଇଥିବାରୁ 'ବୁଢ଼ା ଶଙ୍ଖାରୀ' ଗଳ୍ପଟିକୁ ମଞ୍ଚନାଟ୍ୟ ରୂପାନ୍ତର କରି ସଫଳ ହୋଇପାରିଛନ୍ତି । ମୂଳ କାହାଣୀକୁ ଆଧାର କରି ପାତ୍ରପାତ୍ରୀଙ୍କ ସମାବେଶ ସହିତ ଆବେଗମୟ ସଂଳାପମାନ ସଂଯୋଜିତ କରିବା ସଙ୍ଗେ ସଙ୍ଗେ ନାଟକର ଅନ୍ୟାନ୍ୟ ନାଟ୍ୟ ଉପାଦାନ ପ୍ରତି ନାଟ୍ୟକାର ବିଶ୍ୱଜିତ୍ ସଜାଗ ଦୃଷ୍ଟି ଦେଇପାରିଛନ୍ତି । ତେଣୁ ନାଟକଟିର ନାଟକୀୟତା ପରିସ୍ଫୁଟ ହେବା ସହିତ ନାଟକର ଦ୍ୱନ୍ଦ୍ୱ, ଉତ୍କଣ୍ଠା ଯଥାରୀତିରେ ରକ୍ଷା କରାଯାଇ ନାଟକର ଧର୍ମରକ୍ଷା ସହିତ ନାଟ୍ୟ ଆବେଦନକୁ ଉଚ୍ଚକୀତ କରାଯାଇପାରିଛି । ନାଟକରେ ବୁଢ଼ା ଶଙ୍ଖାରୀର ଚରିତ୍ର ଅତ୍ୟନ୍ତ ସୁନ୍ଦର ଭାବରେ ଚିତ୍ରିତ ହୋଇଥିବାବେଳେ ବୋହୂ, ଶାଶୁ, ଶରଧାମଣି, ଜମିଦାର, ଶଙ୍ଖାରୀ କନ୍ୟା ସେବତୀ, ନିରଂଜନ, ଗୋବିନ୍ଦା, ଅରକ୍ଷିତ, ପଦୀ ଓ ସାଧୁଆ ଆଦିଙ୍କ ଚରିତ୍ର ଯଥାରୀତିରେ ଅଙ୍କିତ ହୋଇଅଛି । ଏହି ନାଟକରେ 'ଭଜୁ ବାଇଆ'ର ଚରିତ୍ର ସ୍ୱତନ୍ତ୍ରଭାବେ ଚିତ୍ରିତ ହୋଇଅଛି । ଏହି ଚରିତ୍ର ମୁଖରେ ଯଥାର୍ଥ ସଂଳାପ ସହିତ କାନ୍ତକବିଙ୍କ ଲୋକପ୍ରିୟ ସଂଗୀତ – 'ସବୁଥିରୁ ବଂଚିତ କରି', 'ଆରେ ମୋର ବାଇଆରଜା ଦେଏ ମୋତେ ବାଇଆକରି' ଆଦି ସଂଯୋଜନା କରି ନାଟକର ପ୍ରୟୋଗାତ୍ମକ ଦିଗଟିକୁ ବେଶ୍ ସମୃଦ୍ଧ ଓ ଉଚ୍ଚକୀତ କରି ପାରିଛନ୍ତି ନାଟ୍ୟକାର ବିଶ୍ୱଜିତ୍ ।

ବିଶ୍ୱଜିତ୍ ଦାସଙ୍କର ଏହି ନାଟକଟି ଏଯାବତ୍ ପ୍ରକାଶିତ ହୋଇ ନ ଥିଲେ ମଧ୍ୟ ଏହା ଅଜିତ୍ ନାଟ୍ୟସଂସ୍ଥା ଦ୍ୱାରା ଓଡ଼ିଶାର ଖ୍ୟାତନାମା ଚଳଚିତ୍ର ଅଭିନେତା ତଥା କୁଶଳୀ ନାଟ୍ୟ ନିର୍ଦ୍ଦେଶକ ଅଜିତ୍ ଦାସଙ୍କ ନିର୍ଦ୍ଦେଶନାରେ ବହୁବାର ମଂଚରେ ଏବଂ ଦୂରଦର୍ଶନରେ ପ୍ରସାରିତ ହୋଇଅଛି ।

## ନାଟକ 'ମହାମାୟା ଅପେରା'ରେ ବିଶ୍ୱଜିତ୍ଙ୍କର ନିଆରା ଶୈଳୀ ଓ ପ୍ରୟୋଗ

ଓଡ଼ିଶାରେ ବ୍ୟବସାୟିକ ରଂଗମଂଚର ପାଦପ୍ରଦୀପ ବିଲୀନ ହୋଇଗଲା ପରେ ସୌଖୀନ୍ ନାଟ୍ୟସଂସ୍ଥା ମାନଙ୍କ ପ୍ରଚେଷ୍ଟାରେ ଓଡ଼ିଆ ନାଟକମାନ ମଞ୍ଚସ୍ଥ ହେଉଥିଲା । ନାଟ୍ୟକଳାର ସମୃଦ୍ଧି ନିମନ୍ତେ ନାଟ୍ୟକର୍ମୀମାନେ ସରକାରୀ ପ୍ରୋତ୍ସାହନ ନିମନ୍ତେ ବାରମ୍ବାର ଦାବି କରି ଆସୁଥିଲେ ମଧ୍ୟ ସେଭଳି କିଛି ସହଯୋଗ ଦୀର୍ଘକାଳଧରି ମିଳି ନ ଥିଲା । ସଂସ୍କୃତି ସମ୍ପନ୍ନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମୟରେ କିଛିକାଳ ନାଟକ ମଞ୍ଚାୟନ ନିମନ୍ତେ ରାଜ୍ୟ ସଂସ୍କୃତି ବିଭାଗ ଅଧୀନରେ ଥିବା ଭଂଜକଳା ମଣ୍ଡପରେ ସଂସ୍ଥାମାନଙ୍କୁ ନାଟକ

ପରିବେଷଣ ନିମନ୍ତେ ବିନା ମୂଲ୍ୟରେ ମଂଚ ଯୋଗାଇଦେବା ସହିତ ନାଟକ ପ୍ରଯୋଜନା ନିମନ୍ତେ କିଛି ଅର୍ଥରାଶିର ସରକାରୀ ସହଯୋଗ ପ୍ରଦାନ କରାଯାଇଥିଲା । ପରବର୍ତ୍ତୀ ସମୟରେ ତାହା ମଧ୍ୟ ବନ୍ଦ ହୋଇଯାଇଥିଲା । ଏହାର କିଛିକାଳ ପରେ ପୁନଶ୍ଚ ନାଟ୍ୟକର୍ମୀମାନଙ୍କ ଅନୁରୋଧ କ୍ରମେ ସରକାର ନାଟ୍ୟକଳାର ପୁନରୁଦ୍ଧାର ପାଇଁ ନିୟମିତ ନାଟକ ପରିବେଷଣ ନିମନ୍ତେ ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ଅନନ୍ତ ମହାପାତ୍ରଙ୍କ ତତ୍ତ୍ୱାବଧାନରେ 'ଉତ୍କଳ ରଙ୍ଗମଞ୍ଚ' ଟ୍ରଷ୍ଟକୁ ଭୁବନେଶ୍ୱରସ୍ଥ ଭଞ୍ଜକଳା ମଣ୍ଡପକୁ ଛାଡ଼ି ଦେଇଥିଲେ । ସେହି ପରିପ୍ରେକ୍ଷୀରେ ୧୯୯୯ ମସିହା ମଇ ପହିଲାରୁ ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ରଚିତ ଓ ନିର୍ଦ୍ଦେଶିତ ନାଟକ 'ମହାମାୟା ଅପେରା' ଏକ ନିଆରା ଶୈଳୀ ଓ ପ୍ରୟୋଗରେ ଅଭିନୀତ ହୋଇଥିଲା ।

ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପ୍ରବର୍ତ୍ତକ ନାଟ୍ୟକାର ବିଶ୍ୱଜିତ୍ ଦାସ ଅନେକ ଦିନର ନୀରବତା ପରେ ନାଟକ 'ମହାମାୟା ଅପେରା' ରଚନା କରିଥିଲେ । ଏହି ନାଟ୍ୟ ରଚନାରେ ନୂତନତା ଏବଂ ଅଭିନବ ପ୍ରୟୋଗ ଶୈଳୀର ବୈଚିତ୍ର୍ୟ ଥିଲା ନାଟକର ମୁଖ୍ୟ ଆକର୍ଷଣ । ଜଣେ ଜଣେ ଅଭିନେତା ଅଥବା ଜଣେ ଜଣେ ଅଭିନେତ୍ରୀ ଏକାଧିକ ଚରିତ୍ରରେ ଅଭିନୟ କରିବାଠାରୁ ଆରମ୍ଭ କରି ବିଷୟବସ୍ତୁର ଅଭିନବ ଧାରା ଦର୍ଶକମଣ୍ଡଳୀଙ୍କୁ ଉତ୍କଣ୍ଠାର ଶୀର୍ଷରେ ବାନ୍ଧି ରଖିବାକୁ ସକ୍ଷମ ହୋଇ ପାରିଥିଲା । 'ମହାମାୟା ଅପେରା' ଭଳି ଏକ କାଳ୍ପନିକ ଶିରୋନାମକୁ ଆଧାର କରି ଏକ ସଂକ୍ଷିପ୍ତ ମାୟାପୂର୍ଣ୍ଣ ତଥା ଭାବମୟ କଥାବସ୍ତୁର ଛତ୍ରେ ଛତ୍ରେ ନାଟ୍ୟକାର ବିଶ୍ୱଜିତ୍ ଦାସ ନାଟକଟିକୁ ଅଭିନବ ରୁଚିରେ ଗଢ଼ି ତୋଳିଛନ୍ତି । କଥାବସ୍ତୁ ବିଶେଷ ବିସ୍ତାରିତ ବା ପ୍ରଲମ୍ବିତ ନହେଲେ ମଧ୍ୟ ନାଟକର କାଳ୍ପନିକ ପୃଷ୍ଠଭୂମି ବେଶ୍ ନାଟକୀୟ ଏବଂ ଅନ୍ତର୍ଦ୍ୱନ୍ଦ୍ୱରେ ଛନ୍ଦିତ ହୋଇ ନାଟକୀୟ ସ୍ୱଚ୍ଛତା ଲାଭ କରିଅଛି ।

ଅନ୍ତର୍ଯ୍ୟାମୀ ଚରିତ୍ରକୁ କେନ୍ଦ୍ରକରି କଥାବସ୍ତୁ ଗତିଶୀଳ । ବାରବର୍ଷକାଳ ହିମାଳୟରେ ତପସ୍ୟା କରି ଫେରିଥିବା ଅନ୍ତର୍ଯ୍ୟାମୀ ଉପରେ ଅପେରା ପାର୍ଟିର ମ୍ୟାନେଜର ବୋଲି ପରିଚିତ ତୀର୍ଥବାସୀ କ୍ଷୁବ୍‌ଧ ହେଉଥିବାବେଳେ ମୁଖ୍ୟ ନାୟିକା ରତ୍ନମାଳିର ଅନ୍ତର୍ଯ୍ୟାମୀ ପ୍ରତି ପ୍ରେମର ସଜୀବପଣ ହ୍ରାସ ହୋଇନାହିଁ ।

ନାଟ୍ୟକାରଙ୍କ ଭାଷାରେ-

ରତ୍ନମାଳି - ଚାଲ, କୋଉ ମନ୍ଦିରରେ ଆମେ ଯାଇ ବାହାହେଇ ପଡ଼ିବା ।

ଅନ୍ତର୍ଯ୍ୟାମୀ - ସ୍କ୍ରିପ୍ଟରେ ନାହିଁ ।

ରତ୍ନମାଳି - ଥାଉ କି ନ ଥାଉ ସେଇଟା ହିଁ ମୋର ମନସ୍କାମନା । ମୁଁ ତୁମକୁ ବାହାହେବାକୁ ଚାହେଁ ।

ଅନ୍ତର୍ଯ୍ୟାମୀ - ମୋତେ ? ଡ୍ରାମାରେ ତୁମର ହିରୋ ଥାଉ ଥାଉ ପରପୁରୁଷକୁ ବାହା ହେବ ? ଜଣେ ସାଧୁବାବାକୁ ? ଛି ଛି, ଏସବୁ ପାପକଥା ତୁମେ କେମିତି କହିପାରୁଛ ରତ୍ନମାଳି ? ଟେକା, ଚପଲ ମାଡ଼ ହେବ ।

ରତ୍ନମାଳି - ତୁମେ ଥଟ୍ଟା କରୁଛ ? ମୋର ଭଲପାଇବାକୁ ତୁମେ ଥଟ୍ଟା କରୁଛ ?

ଅନ୍ତର୍ଯ୍ୟାମୀ - ଆତ୍ମସ୍ଥ ହୁଅ ରତ୍ନମାଳି । ଏ ଡ୍ରାମାରେ ତୁମେ ସୋନାଲି ଆଉ ମୁଁ ସାଧୁବାବା । ତୁମର ପ୍ରିୟତମକୁ ଖଳନାୟକ କିଡ୍‌ନାପ୍ କରିନେଇଛି । ତୁମେ ରାଧାକୃଷ୍ଣଙ୍କ ମୂର୍ତ୍ତି ସାମ୍ନାରେ ରାତିସାରା କାନ୍ଦିକାନ୍ଦି ଭଜନ ଗାଇଗାଇ ଶୋଇ ପଡ଼ିଛ । ପରମେଶ୍ୱରଙ୍କ ନିର୍ଦ୍ଦେଶରେ ମୁଁ ତୁମ ସ୍ୱପ୍ନରେ ଆସିଛି ତୁମର ପ୍ରିୟତମର ସନ୍ଧାନ ଦବାପାଇଁ । ଆଉ ଓଲଟା ତୁମେ ସାଧୁବାବାଙ୍କ ସାଙ୍ଗରେ ଇଲୋପ ହୋଇଯିବାକୁ ବସିଛ ?

ରତ୍ନମାଳି - ତୁମେ ହିଁ ମୋର ପ୍ରିୟତମ । ତୁମେ-ତୁମେ-ତୁମେ ।

ଅନ୍ତର୍ଯ୍ୟାମୀ - ଶୋଇପଡ଼ ରତ୍ନମାଳି, ତୁମପାଇଁ ଆହୁରି ରାତି ଅଛି ।

(ମହାମାୟା ଅପେରା - ପୃ-୧୪)

ଏପରି ରୋମାଣ୍ଟିକ୍ ପୃଷ୍ଠଭୂମିର ଦୃଶ୍ୟକଥା ଅଭିନୀତ ହେବାର ଠିକ୍ ପରେ ପରେ ମଞ୍ଚରେ ପ୍ରତିଭାତ ହୋଇଛନ୍ତି ପୋଲିସ୍ ଇନିସ୍ପେକ୍ଟର ହରିଚନ୍ଦନ । ନମ୍ବର ୱାନ୍ ଡକାୟତ କଏଦୀ ନମ୍ବର ୭୫୭- ଅନ୍ତର୍ଯ୍ୟାମୀ ମହାପ୍ରଶସ୍ତ ଜେଲ୍ ପାଚେରୀ ଡେଇଁ ଚାଲିଆସିଥିବାରୁ ତା'ରି ସନ୍ଧାନରେ ଆସି ପୋଲିସ୍ ଇନିସ୍ପେକ୍ଟର ହରିଚନ୍ଦନ ସେହି ଅପେରା କ୍ୟାମ୍ପ୍‌ରେ ପହଞ୍ଚି ରତ୍ନମାଳିକୁ ଅନ୍ତର୍ଯ୍ୟାମୀ ସଂପର୍କରେ ନାନାଦି ପଚରା ଉଚୁରା କରନ୍ତେ - ଅନ୍ତର୍ଯ୍ୟାମୀ ବୋଲି ଏଠି କେହି ନାହାନ୍ତି ବୋଲି ରତ୍ନମାଳି ଜଣାଇଛି । ଅନ୍ତର୍ଯ୍ୟାମୀକୁ କେନ୍ଦ୍ର କରି ହରିଚନ୍ଦନ ଓ ରତ୍ନମାଳିଙ୍କର ଅନେକ ଉକ୍ତି ପ୍ରତ୍ୟୁକ୍ତି ପରେ ଇନିସ୍ପେକ୍ଟର ହରିଚନ୍ଦନ ଅନ୍ତର୍ଯ୍ୟାମୀର ପ୍ରକୃତ ସନ୍ଧାନ ନ ପାଇ ଫେରିବାକୁ ଉଦ୍ୟତ ହେଉଥିବାବେଳେ ଅପେରାରେ ଇନିସ୍ପେକ୍ଟର ଶ୍ରୀଚନ୍ଦନ ଭୂମିକାରେ ଅଭିନୟ କରିବାକୁ ଥିବା ବୃନ୍ଦାବନଙ୍କ ସହିତ ସାକ୍ଷାତ ହୋଇଛି । କଥୋପକଥନ ମଧ୍ୟରେ ବୃନ୍ଦାବନ ହରିଚନ୍ଦନଙ୍କୁ ରତ୍ନମାଳିର ପରିଚୟ ଜଣାଇଛି ।

ରତ୍ନମାଳି ପର୍ଯ୍ୟାୟକ୍ରମେ ଶୁଭଲକ୍ଷ୍ମୀ ପଟ୍ଟବର୍ଦ୍ଧନ ଓ ମାଧୁରୀ କୁଲ୍‌କର୍ଣ୍ଣି ଭୂମିକାରେ ମଞ୍ଚରେ ଅବତୀର୍ଣ୍ଣ ହୋଇଥିବାବେଳେ ଜଣେ ଅପେରା ଅଭିନେତା ବୃନ୍ଦାବନ ଶତପଥୀ ଇନିସ୍ପେକ୍ଟର ଶ୍ରୀଚନ୍ଦନ ଓ ଆଇ.ଏ.ଏସ୍ ହର୍ଷବର୍ଦ୍ଧନ ପଟବର୍ଦ୍ଧନ ଭୂମିକାରେ ପଦାର୍ପଣ କରିଛନ୍ତି । ପ୍ରସଙ୍ଗକ୍ରମେ ଅନ୍ୟ କେତୋଟି ସଂକ୍ଷିପ୍ତ ଉପକଥାର ସୂଚନା ମିଳିଛି । ଶୁଭଲକ୍ଷ୍ମୀ ନିଜର ସ୍ୱାମୀ ହର୍ଷବର୍ଦ୍ଧନଙ୍କୁ ଉପେକ୍ଷା କରି ଏକାଧିକ ପୁରୁଷଙ୍କୁ ପ୍ରେମ ଫାଶରେ

ପକାଇଥିବାବେଳେ ହର୍ଷବର୍ଦ୍ଧନ ମଧ୍ୟ ଶୁଭଲକ୍ଷ୍ମୀକୁ ଛାଡ଼ି ମାଧୁରୀ କୁଲକର୍ଣ୍ଣି ଫାଶରେ ପଡ଼ିଛନ୍ତି । ମାଧବ ଓ ମୁକୁନ୍ଦ ଚତୁର୍ବେଦୀ ଭୂମିକାରେ ଜଣେ ଅଭିନେତା ଅଭିନୟ କରିଥିବା ବେଳେ ଅପେରାର ମ୍ୟାନେଜର ତୀର୍ଥବାସୀ - ଦୁର୍ଦ୍ଦାନ୍ତ ଡକାୟତ ହିମ୍ମତ ସିଂ ଓ ପ୍ରଭାବଶାଳୀ ମନ୍ତ୍ରୀ ସାଧୁଚରଣ ସାମନ୍ତରାୟ ଭୂମିକାରେ ଅଭିନୟ କରିଛନ୍ତି ।

ନାଟକରେ ସମକାଳୀନ ରାଜନୀତିକୁ ପରୋକ୍ଷରେ ବ୍ୟଙ୍ଗ କରାଯାଇଛି । ଉଦାହରଣ ସ୍ୱରୂପ-

ମାଧବର ସଂଳାପ - 'ସବୁ ସମ୍ଭବ ଇନିସ୍ପେକ୍ଟର ବାବୁ', ରାଜନୀତିରେ ସବୁ ସମ୍ଭବ, ରଙ୍ଗ ବି ବଦଳିଯାଏ । ମଣିଷ ବି ବଦଳି ଯାଆନ୍ତି ।

(ମହାମାୟା ଅପେରା, ପୃ-୬୫)

ଜନସମାଜକୁ ସୁରକ୍ଷା ଦେବା ପୋଲିସର କର୍ତ୍ତବ୍ୟ । ସେ କ୍ଷେତ୍ରରେ ପୋଲିସ ମଦ୍ୟପାନ କରି ନିଶାସକ୍ତ ହେଲେ କିଏ ବା ତାଙ୍କୁ ଗୁରୁତ୍ୱ ଦେବ । ସେହିପରି ଘଟଣା ସୃଷ୍ଟି ହୋଇଛି ପୋଲିସ୍ ଇନିସ୍ପେକ୍ଟର ହରିଚନ୍ଦନଙ୍କ କ୍ଷେତ୍ରରେ ।

ନାଟକ 'ମହାମାୟା ଅପେରା'ର କଥାବସ୍ତୁ ପାରମ୍ପରିକ ନାଟ୍ୟଧାରାରୁ ବ୍ୟତିକ୍ରମ ହେଲେ ବି ଏହାର ଚରିତ୍ର ସମାବେଶ ଏବଂ ନୂତନ ପ୍ରୟୋଗ ପରିପାଟୀ ନାଟକକୁ ଏକ ବର୍ଣ୍ଣାଢ଼୍ୟ ଭାବାବେଗରେ ଉତ୍ତୀର୍ଣ୍ଣ କରାଇପାରିଛି ।

ନାୟିକା ରତ୍ନମାଳି ଅନ୍ତର୍ଯ୍ୟାମୀକୁ ଭଲପାଏ । ବିବାହ କରିବାକୁ ଚାହେଁ । କିନ୍ତୁ ମ୍ୟାନେଜର ତୀର୍ଥବାସୀ ରତ୍ନମାଳିର ପ୍ରତିଟି ଅଭିଳାଷ ପୂରଣ କରିବାକୁ ପ୍ରସ୍ତୁତ । ତେଣୁ ରତ୍ନମାଳିର କଥାରେ ହିଁ ତୀର୍ଥବାସୀ ବାରବର୍ଷ ପରେ ଫେରିଥିବା ଅନ୍ତର୍ଯ୍ୟାମୀକୁ ପୁନଶ୍ଚ ଅପେରାରେ ନିଯୁକ୍ତି ଦେଇଛନ୍ତି ।

ଏହି ଭିନ୍ନ ସ୍ୱାଦର ନାଟକ 'ମହାମାୟା ଅପେରା' ନାଟ୍ୟକାର ବିଶ୍ୱଜିତ୍‌ଙ୍କର ଏକ ନିଆରା ସୃଷ୍ଟି । ନାଟକର ପ୍ରତିଟି ଚରିତ୍ର ଯଥାରୀତିରେ ଚିତ୍ରିତ । ଏଥିରେ ଭିନ୍ନ ଭିନ୍ନ ରସଚର୍ଯ୍ୟା ସହିତ ପ୍ରୟୋଜନାନୁଯାୟୀ ସଂଗୀତ ସଂଯୋଜନା ମଧ୍ୟ କରାଯାଇଛି । ସ୍ଥଳ ବିଶେଷରେ କେତେକ ଅମିତ୍ରାକ୍ଷର ଛନ୍ଦଯୁକ୍ତ ଯାତ୍ରା ସଂଳାପ ସଂଯୋଜନା କରାଯାଇ ନାଟକକୁ କେତେକାଂଶରେ ମନୋରଂଜନକ୍ଷମ କରାଯାଇ ପାରିଛି । ନାଟକ 'ମହାମାୟା ଅପେରା' ସ୍ୱତନ୍ତ୍ର ପରିପାଟୀରେ ରଚିତ ହୋଇଥିଲେ ମଧ୍ୟ ଏଥିରେ ସାଂପ୍ରତିକ ଅବକ୍ଷୟଗ୍ରସ୍ତ ସମାଜର ଚିତ୍ର ବେଶ୍ ସଜୀବ ଭାବେ ଅଙ୍କିତ ହୋଇଅଛି । ଅନେକ ସଂକେତଧର୍ମୀ ସଂଳାପ ନାଟକରେ

ସଂଯୋଜିତ ହୋଇଥିଲେ ମଧ୍ୟ ସଂଳାପ ଗୁଡ଼ିକ ଯେ ପାତ୍ରାଭିମୁଖୀ ଏବଂ ଉନ୍ନତ ପରିପାଟୀର ଏଥିରେ ସନ୍ଦେହ ନାହିଁ । ୧୯୯୯ ମସିହାରେ ରଚିତ ଏହି ନାଟକ ୨୦୦୦ ମସିହାରେ ପ୍ରକାଶ ଲାଭ କରିଅଛି । ଏହା ଓଡ଼ିଆ ନବନାଟ୍ୟ ଧାରାର ଏକ ସଫଳ ରୂପାୟନ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇପାରେ ।

## ଓଁ ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ନାଟ୍ୟ ସଂଭାରକୁ ତିନୋଟି ପର୍ଯ୍ୟାୟରେ ଆଲୋଚନା କରାଯାଇପାରେ । ୧୯୫୭ ମସିହାଠାରୁ ଏକାଦି କ୍ରମେ ୧୯୮୨ ପର୍ଯ୍ୟନ୍ତ ତାଙ୍କ ରଚିତ ଅନେକ ନାଟକ ଓ ଏକାଙ୍କିକା ଏକ ପର୍ଯ୍ୟାୟରେ ଚିହ୍ନିତ ହୋଇଥିବାବେଳେ ୧୯୮୨ରୁ ୧୯୯୮ ପର୍ଯ୍ୟନ୍ତ ଶ୍ରେଷ୍ଠାଂଶେ ନଟବର, ସୁଟିଂ ଚାଲିଛି, ମୁଖା, ଚୋର ଆଦି ଛୋଟ ନାଟକ ସହିତ 'ଧରାସ୍ୱର୍ଗ' ଭାରତର ମୁକ୍ତିସଂଗ୍ରାମକୁ ଆଧାର କରି 'ସୂର୍ଯ୍ୟୋଦୟ ପଥେ', 'ନୂଆଜହ୍ନ' ଏବଂ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରଚିତ ପ୍ରଖ୍ୟାତ ଲୋକପ୍ରିୟ ଗଳ୍ପ 'ବୁଢ଼ା ଶଂଖାରୀ' ନାଟ୍ୟ ରୂପାନ୍ତର ଆଦି କରିଥିବାବେଳେ ତାଙ୍କ ଅବସର ପରେ ୧୯୯୯ରୁ ୨୦୦୪ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଖ୍ୟାତନାମା ଅଭିନେତା ଓ ନାଟ୍ୟ ନିର୍ଦ୍ଦେଶକ ଅନନ୍ତ ମହାପାତ୍ରଙ୍କ ପ୍ରତିଷ୍ଠିତ 'ଉତ୍କଳ ରଙ୍ଗମଞ୍ଚ' ନିମନ୍ତେ ରଚିତ ନାଟକ 'ମହାମାୟା ଅପେରା', 'ଓଁ ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ' ଓ 'ସେଇ ତିନିଜଣ' ଆଦି ତୃତୀୟ ପର୍ଯ୍ୟାୟର ଅନ୍ତର୍ଭୁକ୍ତ । 'ମହାମାୟା ଅପେରା' ଓ 'ସେଇ ତିନିଜଣ' ନାଟକ ଦୁଇଟି ଖୁବ୍ ସଂଘାତପୂର୍ଣ୍ଣ ହୋଇଥିବାବେଳେ 'ଓଁ ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ' (୨୦୦୦) ନାଟକଟି ବେଶ୍ ମନୋରଂଜନ ଧର୍ମୀ ଓ ହାସ୍ୟରସ ପରିପୂର୍ଣ୍ଣ ହୋଇଅଛି ।

କମଳାଦେବୀଙ୍କ ଏକମାତ୍ର କନ୍ୟା ପ୍ରିୟା ନାଟକର ମୁଖ୍ୟ ନାୟିକା ଏବଂ କୃପଣ ବ୍ୟବସାୟୀ ନରହରିଙ୍କ ପୁଅ ପ୍ରିୟରଂଜନ ନାଟକର ମୁଖ୍ୟନାୟକ ଭାବେ ଚିତ୍ରିତ ହୋଇଥିଲେ ମଧ୍ୟ କମଳା ଦେବୀ, ଜଗଦାନନ୍ଦ, ନରହରି ଓ ଦୁଃଖୀଶ୍ୟାମ ଆଦିଙ୍କ ଚରିତ୍ର ନାଟକରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ପ୍ରିୟରଂଜନ 'ପରାଶର ଶର୍ମା' ଛଦ୍ମ ନାମରେ କବିତା ଲେଖନ୍ତି । ପ୍ରିୟା ସେହି ପରାଶର ଶର୍ମାଙ୍କ କବିତାର ଅନ୍ୟତମ ମୁଗ୍ଧା ପୂଜାରିଣୀ । ପରାଶରଙ୍କ କବିତା ପଢ଼ି ପ୍ରିୟା କବିଙ୍କୁ ମନେମନେ ଭଲପାଇ ବିବାହ କରିବାକୁ ଗଭୀର ପ୍ରୟାସ କରିଥିବାବେଳେ କମଳାଦେବୀ ସିମେଣ୍ଟ ବ୍ୟବସାୟୀ ନରହରିଙ୍କ ପୁତ୍ର ପ୍ରିୟରଂଜନଙ୍କ ସହିତ ନିଜର ଏକମାତ୍ର କନ୍ୟା ପ୍ରିୟାଙ୍କୁ ବିବାହ ଦେବାକୁ ଚାହାଁନ୍ତି । କିନ୍ତୁ ପରାଶର ଶର୍ମା ଯେ ପ୍ରିୟରଂଜନ ଏକଥା ପ୍ରିୟା ଜାଣନ୍ତି ନାହିଁ । ତେଣୁ ଏହି ପ୍ରସ୍ତାବ ସପକ୍ଷରେ ପ୍ରିୟାର ଅନୁକୂଳ ମତ ନ ଥିବାରୁ ପ୍ରିୟାର ମାମୁଁ

ଜଗଦାନନ୍ଦ ଭାଣିଜୀର ସୁଖ ସୌଭାଗ୍ୟ ନିମନ୍ତେ ଏ ପ୍ରସ୍ତାବକୁ ଭାଙ୍ଗି ଦିଅନ୍ତି ଏବଂ ପରାଶର ଶର୍ମାଙ୍କର ସନ୍ଧାନ ନେଉଥାଆନ୍ତି । କେବଳ ସେତିକି ନୁହେଁ ନିଜ ଭଉଣୀ କମଳାଙ୍କୁ ଖୁସି କରାଇବା ନିମନ୍ତେ ଜଗଦାନନ୍ଦ ପ୍ରିୟା ନିମନ୍ତେ ଦୁଃଖୀଶ୍ୟାମ ନାମକ ଜଣେ ଯୁବନାଟ୍ୟ ନିର୍ଦ୍ଦେଶକଙ୍କୁ ଆଇ.ଏ.ଏସ୍ ଅଫିସର୍ ଭାବେ ପରିଚୟ ଦେଇ କନ୍ୟା ଦେଖିବାକୁ ନିମନ୍ତ୍ରଣ ଜଣାଇ କମଳାଦେବୀଙ୍କ ଘରକୁ ନେଇ ଆସନ୍ତେ ଦୁଃଖୀଶ୍ୟାମ ମା' କମଳାଙ୍କୁ ପାତ୍ରୀବୋଲି ମନେକରି ବହୁ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କରନ୍ତି, ଯାହାକି ନାଟକରେ ବିଶେଷ ହାସ୍ୟରସର ବାତାବରଣ ସୃଷ୍ଟିକରେ । ଅପରପକ୍ଷରେ କାନନବାଳା ନାମ୍ନୀ ଏକ କନ୍ୟାଙ୍କ ସହିତ ନିଜ ପୁତ୍ର ପ୍ରିୟରଂଜନର ନରହରି ପ୍ରସ୍ତାବ ଆଗତ କରିଥିଲେ ମଧ୍ୟ ତାହା କାର୍ଯ୍ୟକାରୀ ହୋଇପାରେ ନାହିଁ । କିନ୍ତୁ ଦୁଃଖୀଶ୍ୟାମ ଖଳନାୟକ ଭୂମିକାରେ ଅବତୀର୍ଣ୍ଣ ହୋଇ ପ୍ରିୟାକୁ ଅପହରଣ କରିବାର ଯୋଜନା କରେ ।

ନାଟକର ଶେଷ ପର୍ଯ୍ୟାୟରେ ମିଳନ ଗେଷ୍ଟ ହାଉସ୍‌ରେ ଘଟଣାକ୍ରମେ ପ୍ରିୟା ଓ ପ୍ରିୟରଂଜନଙ୍କର ସାକ୍ଷାତ ହୁଏ । ଜଗଦାନନ୍ଦ ହିଁ ଏହି ମିଳନର ସୂତ୍ରଧର ବା କେନ୍ଦ୍ରବିନ୍ଦୁ ପାଲଟି ଯାଆନ୍ତି । ଯେଉଁ ପରାଶର ଶର୍ମା ଓରଫ୍ ପ୍ରିୟ ରଂଜନଙ୍କ 'କସ୍ତୁରୀ' କବିତା ପଢ଼ି ପ୍ରିୟା ପାଗଳିନୀ ପ୍ରାୟ ହୋଇଥିଲା - ସେହି କବିତା ହିଁ ଦୁହିଁଙ୍କ ମିଳନରେ ପ୍ରଧାନ ସହାୟକ ହୋଇଅଛି ।

ଏହିପରି ଏକ ହାସ୍ୟରସପୂର୍ଣ୍ଣ କଥାବସ୍ତୁକୁ ନେଇ କୁଶଳୀ ନାଟ୍ୟକାର ବିଶ୍ୱଜିତ୍ ଦାସ 'ଓଁ ଶ୍ରୀ ଶ୍ରୀ ପ୍ରଜାପତୟେଃ ନମଃ' ନାଟକ ରଚନା କରି ସଫଳ ହୋଇଛନ୍ତି ଏବଂ ଅଶେଷ ଲୋକପ୍ରିୟତା ଅର୍ଜନ କରିଅଛନ୍ତି ।

ଆଲୋଚ୍ୟ ନାଟକର ପ୍ରଧାନ ଉପାଦାନ ସଂଳାପ ସଂଯୋଜନା ବେଶ୍ ପ୍ରାଣସ୍ପର୍ଶୀ ତଥା ପ୍ରଭାବଶାଳୀ ହୋଇଅଛି । ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଏଠାରେ ଉଦ୍ଧାର କରାଯାଇ ପାରେ । ଯଥା - ମିଛିମିଛିକା ଆଇ.ଏ.ଏସ୍ ସାଜି ଆସିଥିବା ଦୁଃଖୀଶ୍ୟାମ ସହିତ ଜଗଦାନନ୍ଦଙ୍କ ଉକ୍ତି ପ୍ରତ୍ୟୁକ୍ତି...

ଦୁଃଖୀଶ୍ୟାମ - କାଲି ଆହୁରି ତିନିଟା ଜାଗାରେ ଝିଅ ଦେଖିବାର ଅଛି । ଓଃ କ'ଣ କରିବି ଆଜ୍ଞା; କି ଦୁର୍ଯୋଗରେ ଆଇ.ଏ.ଏସ୍ ହେଲି ଯେ ଝିଅ ଦେଖି ଦେଖି ନୟାନ୍ତ ହୋଇଗଲିଣି ।

ଜଗଦାନନ୍ଦ - ଇଆଡ଼େ ଆମେ ପୁଅ ଖୋଜିଖୋଜି ନୟାନ୍ତ ହୋଇଗଲୁଣି । କିଏ ଗୁଡାଖୁ କମ୍ପାନୀ କରିଛି ତ, କିଏ ସିମେଣ୍ଟ୍ ଗୋଦାମ ଖୋଲିଛି । (ଦୁଃଖୀଶ୍ୟାମ ଉଚ୍ଚ ସ୍ୱରରେ ହସି ଉଠିଲା)

ଦୁଃଖୀଶ୍ୟାମ - ସେଇଥିଲାଗି ଏ ଅଧୀନ ଉପରେ ନଜର ପଡ଼ିଲା ନା ?

ଜଗଦାନନ୍ଦ - ପଡ଼ିବ ନାହିଁ? ଯେତେହେଲେ ଆଇ.ଏ.ଏସ୍ । ଆଇ.ଏ.ଏସ୍ କ୍ୟାଣ୍ଡିଡେଟ୍‌କୁ ଜ୍ୱାଇଁ କରିବାକୁ କିଏ ନ ଚାହେଁ ।

ଦୁଃଖୀଶ୍ୟାମ - କାହିଁକି ନ ଚାହିଁବେ ? ଆଇ..ଏ.ଏସ୍ ମାନେ ତ ହଉଛନ୍ତି ସୋସାଇଟିର କ୍ରିମ୍ - ମାନେ ସମାଜର ଯାହାକୁ କହନ୍ତି - ଲହୁଣୀ ।

ଜଗଦାନନ୍ଦ - ଯାହା କହିଲ - ସମାଜର ଲହୁଣୀ, ଇଏ ବାଳଗୋପାଳର ଲହୁଣୀ ନୁହେଁ କି ପାଉଁରୁଟିର ଲହୁଣୀ ନୁହେଁ, ସମାଜର ଲହୁଣୀ - ବାଃ ବାଃ

(ଦୁଃଖୀଶ୍ୟାମ ହଠାତ୍ ସ୍ୱର ବଦଳାଇ ଜଗଦାନନ୍ଦ ଆଡ଼କୁ ନଇଁ ଅନୁଚ୍ଚ ସ୍ୱରରେ କହିଲେ)

ଜଗଦାନନ୍ଦ - ପର୍‌ଫେକ୍ଟ

ଦୁଃଖୀଶ୍ୟାମ - ବେଶୀ ସମୟ ଡ୍ରାମା ଚାଲିଲେ ଧରା ପଡ଼ିଯିବି ।

ଜଗଦାନନ୍ଦ - ତୁମରତ ବାପା ଆହୁରି ତିନିଟା ଜାଗାକୁ ଝିଅ ଦେଖି ଯିବାର ଅଛି । ସେଇକଥା କହି ଯେତେଶୀଘ୍ର ପାରିବ ଏଠୁ ଖସିଯିବ ।

ଦୁଃଖୀଶ୍ୟାମ - ଆରେଂଜମେଣ୍ଟଟା ଆପଣଙ୍କ ଭାଣିଜୀକୁ କହି ନାହାନ୍ତି ତ ?

ଜଗଦାନନ୍ଦ - ପାଗଳ ! ଭାଣିଜୀ କିମ୍ବା ଭଉଣୀ କେହି ଜାଣିନାହାନ୍ତି । କୁଆ କୋଇଲି ବି ଜାଣିନାହାନ୍ତି ।

ଦୁଃଖୀଶ୍ୟାମ - ମୁଁ ଯାହା କହିଛି ମନେରଖିଛନ୍ତି ତ ? ଚେକ୍ ଚଳିବ ନାହିଁ, ମୋତେ ଯାହା ଦେବେ କ୍ୟାସ୍‌ରେ ଦେବେ । ଇତ୍ୟାଦି ।

(ଦୃଶ୍ୟ - ୪, ପୃ-୨୯)

କେବଳ ସଂଳାପ ସଂଯୋଜନା ନୁହେଁ ଉପଯୁକ୍ତ ଲଘୁ ସଂଘାତ ସହିତ ଯଥାର୍ଥ ଉତ୍କଣ୍ଠା ରକ୍ଷା କରିବା ସଙ୍ଗେ ସଙ୍ଗେ ଯଥେଷ୍ଟ ହାସ୍ୟରସର ଅବତାରଣା କରାଯାଇଛି । ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ଚରିତ୍ରମାନେ ବେଶ୍ ମାପ୍‌ଚୁପ୍ । ଅଯଥା ଗୁଡ଼ାଏ ବାକ୍‌ବିତଣ୍ଡା କରି ସେମାନେ କେବେ ନିମ୍ନଗାମୀ ହୁଅନ୍ତି ନାହିଁ । ସେହି ଧାରାରେ ଆଲୋଚ୍ୟ ନାଟକ 'ଓଁ ଶ୍ରୀ ଶ୍ରୀ ପ୍ରଜାପତୟେ ନମଃ'ର ପ୍ରତିଟି ଚରିତ୍ର ଯଥାରୀତିରେ ଚିତ୍ରିତ ହୋଇଅଛନ୍ତି । ପ୍ରୌଢ଼ା କମଳାଙ୍କ ଭାଇ ଜଗଦାନନ୍ଦଙ୍କ ଚରିତ୍ରଟି ନାଟକରେ ବେଶ୍ ଚାତୁର୍ଯ୍ୟପୂର୍ଣ୍ଣ ଏବଂ ରହସ୍ୟମୟ ଭାବେ ଅଙ୍କିତ ହୋଇଅଛି ।

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ଏହି ସଫଳ ମନୋରଂଜନଧର୍ମୀ ନାଟକ - 'ଓଁ ଶ୍ରୀ

ଶ୍ରୀ ପ୍ରଜାପତୟେଃ ନମଃ' ଖ୍ୟାତନାମା ନାଟ୍ୟ ନିର୍ଦ୍ଦେଶକ ଅନନ୍ତ ମହାପାତ୍ରଙ୍କ ସଫଳ ନିର୍ଦ୍ଦେଶନାରେ ଯଥାରୀତିରେ ଗତିଶୀଳ ହେବା ସଙ୍ଗେ ସଙ୍ଗେ ବେଶ୍ ଲୋକପ୍ରିୟତା ଅର୍ଜନ କରିବାରେ ସମର୍ଥ ହୋଇପାରିଥିଲା ।

## ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ଶେଷ ନାଟକ 'ସେଇ ତିନିଜଣ'ରେ କଳଙ୍କିତ ରାଜନୈତିକ ଚିତ୍ର

ବିଶ୍ୱଜିତ୍ ଦାସଙ୍କ ରଚିତ ନାଟକ 'ସେଇ ତିନିଜଣ' ଉତ୍କଳ ରଙ୍ଗମଞ୍ଚ ପକ୍ଷରୁ ଭଂଜକଳା ମଣ୍ଡପରେ ଅକ୍ଟୋବର ୨୦୦୪ରୁ ପ୍ରାୟ ଦୁଇମାସ ଧରି ଅନନ୍ତ ମାହାପାତ୍ରଙ୍କ ନିର୍ଦ୍ଦେଶନାରେ ସଫଳତାର ସହିତ ଅଭିନୀତ ହୋଇଥିଲା । ଏହା ଥିଲା ବିଶ୍ୱଜିତ୍ ଦାସଙ୍କ ରଚିତ ଶେଷ ନାଟକ । ସେହି ୨୦୦୪ ମସିହା ଡିସେମ୍ବର ୩୦ ତାରିଖ ଅପରାହ୍ନରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଆୟୋଜିତ ଏକ ନାଟ୍ୟ ଆଲୋଚନାଚକ୍ରରେ ମୁଖ୍ୟବକ୍ତା ଭାବେ ଯୋଗଦାନ କରି ତାଙ୍କର ଲିଖିତ ବକ୍ତବ୍ୟ ଶେଷ କରିବା ସଙ୍ଗେ ସଙ୍ଗେ ସେ ହୃଦ୍‌ଘାତରେ ସେହି ସଭାମଂଚରେ ଟଳି ପଡ଼ିଥିଲେ । ତେଣୁ 'ସେଇ ତିନିଜଣ' ହିଁ ଥିଲା ତାଙ୍କର ଶେଷ ନାଟକ ।

'ସେଇ ତିନିଜଣ' (୨୦୧୩) ହେଉଛି ସାଂପ୍ରତିକ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଏକ ଶାଣିତ ଇସ୍ତାହାର । ସଂପ୍ରତି ସମାଜରେ ଦେଖା ଦେଇଥିବା, ଦୁର୍ନୀତି, ଭ୍ରଷ୍ଟାଚାର ଓ ରାଜନୈତିକ ଯଥେଚ୍ଛାଚାରର ନିଚ୍ଛକ ଚିତ୍ର ଅଙ୍କିତ ହୋଇଛି ବେଶ୍ ଏକ ଆବେଗମୟ ପରିପାଟୀରେ । ସାଂପ୍ରତିକ ହୀନ ରାଜନୈତିକ ବ୍ୟବସ୍ଥା ଓ କଳୁଷିତ ସାମାଜିକ ଘନଘଟା ମଧ୍ୟରେ ନିପିଡ଼ିତ ମଣିଷ କିପରି ପଳପଳ କରି ରୋମଂଥିତ ହେଉଛି ତାହାର ଜୀବନ୍ତ ଚିତ୍ର ନାଟକରେ ଅଙ୍କନ କରିବା ସହିତ ଏକ ଭୟାର୍ତ୍ତ ଯୁବକର ସୁପ୍ତ ଚେତନାକୁ ଜାଗ୍ରତ କରାଇ ସାମାଜିକ ଅଧପତନ ବିରୁଦ୍ଧରେ ବିଦ୍ରୋହର ସଂକେତ ସୂତ୍ରପାତ କରାଯାଇଛି । ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ 'ଡାକଘର' ନାଟକରେ ଏକ ବାଳକକୁ କେନ୍ଦ୍ରବିନ୍ଦୁରେ ରଖି ସମାଜର ନାନାଦି ଚିତ୍ର ଚରିତ୍ର ଉପସ୍ଥାପନା କରି ଏକ ପ୍ରଭାବଶାଳୀ ନାଟକ ରଚନା କରିଥିଲେ । ସେ କ୍ଷେତ୍ରରେ ସାମାଜିକ ବିପ୍ଳବ ବା ଦୁର୍ନୀତି ଓ ଭ୍ରଷ୍ଟାଚାର ବିରୁଦ୍ଧରେ ବିଦ୍ରୋହର ସୂତ୍ରପାତ ନଥିଲେ ମଧ୍ୟ - ନାଟକର ନାୟକ ବା କେନ୍ଦ୍ରବିନ୍ଦୁ ଥିଲା ଜଣେ କିଶୋରର ଚରିତ୍ର । ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ 'ସେଇ ତିନିଜଣ'ରେ କଲେଜରେ ପଢୁଥିବା ଯୁବକ ପ୍ରଳୟ ଚରିତ୍ରକୁ ଅବଲୋକନ କଲେ ବିଶ୍ୱକବିଙ୍କ 'ଡାକଘର'ର ଅମଲ୍ ଚରିତ୍ର ସ୍ମରଣକୁ ଆସେ । ଯଦିଓ କଥାବସ୍ତୁ ଭିନ୍ନ, ଉପସ୍ଥାପନା ଭିନ୍ନ, ଚିତ୍ର ଚରିତ୍ର ଭିନ୍ନ କିନ୍ତୁ ଦୁଇଟିଯାକ ନାଟକର ନାୟକ ଚରିତ୍ର ବା କେନ୍ଦ୍ରବିନ୍ଦୁ ଏକାପରି । ଜଣେ କିଶୋର

ଆଉଜଣେ ଯୁବକ । 'ଡାକଘର'ରେ କିଶୋର ଅମଲର ସୂକ୍ଷ୍ମ ମନସ୍ତତ୍ତ୍ୱ ବିସ୍ତାରିତ ଭାବେ ଚିତ୍ରିତ ହୋଇଥିବାବେଳେ ବିଶ୍ୱଜିତଙ୍କ ନାଟକ 'ସେଇ ତିନିଜଣ'ରେ ଏକ କୋମଳମତି ଯୁବକ ପ୍ରଳୟର ଭୟାର୍ତ୍ତ ସୁପ୍ତ ଚେତନାର ଜାଗରଣ, ଦୁର୍ନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ଉଦ୍‌ଗୀରଣ ହୋଇ ଏକ ଅଭିନବ ଯୁବଚେତନାର ସ୍ଫୁରଣ ଘଟିଅଛି । ଏହା ହିଁ କେବଳ ବିଶ୍ୱଜିତଙ୍କ ପରି ସଫଳ ନାଟ୍ୟକାରଙ୍କ ତୂଳୀରେ ସଂଭବ ହୋଇପାରେ । ଏ ପ୍ରସଙ୍ଗରେ ଦୈନିକ ସମ୍ବାଦ ପତ୍ର - 'ସମ୍ବାଦ'ର ସମୀକ୍ଷାତ୍ମକ ଆଲେଖ୍ୟ ଉଲ୍ଲେଖଯୋଗ୍ୟ - "ଅବକ୍ଷୟର ପ୍ରଚ୍ଛଦ ପଟରେ ଯେଉଁ ଚରିତ୍ରମାନେ ଭ୍ରଷ୍ଟାଚାର ଓ ହିଂସାର ନାୟକ ସାଜିଛନ୍ତି ସେଇମାନଙ୍କ ପ୍ରତିନିଧିରୂପେ ଅବତୀର୍ଣ୍ଣ - 'ସେଇ ତିନିଜଣ' । ସେଇ ତିନିଜଣ ହିଁ ଏ ଯୁଗର ସର୍ବଶ୍ରେଷ୍ଠ ଅବତାର ରୂପେ ନିଜ ନିଜର ସ୍ୱାର୍ଥସାଧନ ପାଇଁ ସମାଜ ଓ ରାଜନୀତିର ଅଧୋଗତି ଦିଗରେ ନିଜନିଜର ଯାତ୍ରା ଅବ୍ୟାହତ ରଖିଛନ୍ତି । ସେମାନଙ୍କ ଅଲକ୍ଷ୍ୟରେ ସେମାନଙ୍କ ଯାତ୍ରାପଥରେ ଅପେକ୍ଷାରେ ରହିଛି ଏକ କାଳ୍ପନିକ ପ୍ରଳୟ । ସେମାନଙ୍କୁ ଧ୍ୱଂସ କରି ଏକ ନୂଆ ମାନବଧର୍ମୀ ବ୍ୟବସ୍ଥାର ସୃଷ୍ଟି ପାଇଁ ସ୍ୱର ଉତ୍ତୋଳିତ ହୋଇଛି, ନାଟକ 'ସେଇ ତିନିଜଣ'ରେ ।"

(ସମ୍ବାଦ, ୧୦ ଅକ୍ଟୋବର, ୨୦୦୪)

ନାଟକର କଥାବସ୍ତୁ ସାଂପ୍ରତିକ ସମାଜ ବ୍ୟବସ୍ଥା ଆଧାରିତ ଏବଂ ନାଟକଟି ସଂଘାତର ଛତ୍ରେଛତ୍ରେ ଯଥାରୀତିରେ ଉତ୍ତରିତ । ତେଣୁ ଆରମ୍ଭରୁ ଶେଷଯାଏ ନାଟକ ଉତ୍କଣ୍ଠାର ଶୀର୍ଷକୁ ଛୁଇଁବାରେ ସମର୍ଥ । ନାଟକର ପ୍ରଥମ ଦୃଶ୍ୟ - ଏକ ଛାୟାଦୃଶ୍ୟ ଭାବେ ପରିବେଷିତ ହୋଇଛି - ଯହିଁରେ ତିନିଜଣ ମୁଖାଧାରୀ ଆତତାୟୀ ସାମ୍ବାଦିକ ମନୋଜ ମହାପାତ୍ରଙ୍କ ଘରକୁ ପ୍ରବେଶ କରିଛନ୍ତି ଏବଂ ଆତଙ୍କିତ ମନୋଜ ଓ ତାଙ୍କ ପତ୍ନୀ ସୁମିତ୍ରାଙ୍କ ପ୍ରତି ଅମାନୁଷିକ ବ୍ୟବହାର ପ୍ରଦର୍ଶନ କରିଛନ୍ତି । ମନୋଜଙ୍କ ପତ୍ନୀ ସୁମିତ୍ରାକୁ ବଳପୂର୍ବକ ଟାଣି ନେବାବେଳେ ମନୋଜ ପ୍ରତିବାଦର ସ୍ୱର ଉଠାଇବା ମାତ୍ରେ ଆତତାୟୀଙ୍କ ଛୁରିକା ଆଘାତରେ ମନୋଜ ଟଳି ପଡ଼ିଛି । ଉଭୟ ମନୋଜ ଓ ସୁମିତ୍ରାଙ୍କ ଆର୍ତ୍ତ ଚିତ୍କାର ସମୟରେ ଛାୟାଦୃଶ୍ୟର ଆଲୋକ ନିର୍ବାପିତ ହୋଇଛି ।

ନାଟକର ପ୍ରଥମ ଦୃଶ୍ୟ ଏହିପରି ଏକ ଛାୟାଦୃଶ୍ୟରୁ ଆରମ୍ଭ ହୋଇ କ୍ରମଶଃ ଗତିଶୀଳ ହୋଇଛି ଏବଂ ଶେଷରେ ଶୀର୍ଷକୁ ଛୁଇଁଛି । କିନ୍ତୁ ସାମଗ୍ରିକଭାବେ ନାଟକ 'ସେଇ ତିନିଜଣ'ର ମୁଖ୍ୟ ପ୍ରତିପାଦ୍ୟ କଥାବସ୍ତୁ ହେଲା - ସ୍ୱନାମଧନ୍ୟ ବିଚାରପତି ବିପ୍ର ଚରଣ ଚୌଧୁରୀଙ୍କର ପତ୍ନୀ ସୁଧା ଓ କଲେଜରେ ଅଧ୍ୟୟନରତ ପୁତ୍ର - ପ୍ରଳୟ । ପ୍ରଳୟର ମନ ଭିତରେ ଭୟ ଓ ଆତଙ୍କିତ ଆଶଙ୍କା । ଯୁବ ଚପଳତା ପରିବର୍ତ୍ତେ ସେ ଯେମିତି ଏକ ଭୟାର୍ତ୍ତ ଚେତନାରେ ଜଡ଼ସଡ଼ । ସେ କେତେବେଳେ ପିତାମାତାଙ୍କଠୁ ଦୂରେଇ ରହୁଛି ତ କେତେବେଳେ ତାଙ୍କୁ

ଶିକ୍ଷାଦାନ କରିବାକୁ ତାଙ୍କ ଘରକୁ ଆସୁଥିବା ପ୍ରଫେସର ପାତ୍ରଙ୍କୁ ଦେଖି ଲୁଚୁଛି । ପୁତ୍ରର ଏ ପ୍ରକାର ଆଚରଣରେ ସୁଧାଦେବୀ ଚିନ୍ତିତ ଥିବାବେଳେ ବିଚାରପତି ବିପ୍ରଚରଣଙ୍କ ପାଖରେ ସେ କଥା ଚିନ୍ତା କରିବାକୁ ସମୟର ଅଭାବ । ସେ ତାଙ୍କର କୋର୍ଟର କାର୍ଯ୍ୟ ବିଚାର ସଂପର୍କିତ କାର୍ଯ୍ୟରେ ବ୍ୟସ୍ତ ।

ବିଚାରପତି ବିପ୍ରଚରଣଙ୍କ ପାରିବାରିକ ପରିବେଶ ବ୍ୟତୀତ ନାଟକର ଅନ୍ୟତମ ଆବେଗମୟ ଦିଗଟି ହେଲା ମନ୍ତ୍ରୀ ସୁଦର୍ଶନ ମଙ୍ଗରାଜଙ୍କ ରାଜନୈତିକ ବଳୟ । ମନ୍ତ୍ରୀ ସୁଦର୍ଶନ ମଙ୍ଗରାଜଙ୍କ ସହିତ ସଂପର୍କିତ ଏମ୍.ପି ଘନଶ୍ୟାମ ସାହୁ ଓ ମନ୍ତ୍ରୀଙ୍କର ସରଳ ବ୍ୟକ୍ତିଗତ ସହାୟକ କାହ୍ନୁ ନାୟକ । କାହ୍ନୁ ନାୟକ ବିଚାରପତି ବିପ୍ରଚରଣଙ୍କର ପଡ଼ିଶାଘରେ ରହନ୍ତି । ମାନସୀ କାହ୍ନୁ ନାୟକଙ୍କର କନ୍ୟା । ମାନସୀର ସଂବେଦନଶୀଳ କଥାବାର୍ତ୍ତା ଓ ଆଦର ଯତ୍ନରେ ପ୍ରଳୟ ବଶବର୍ତ୍ତୀ । ଭଲରେ, ମନ୍ଦରେ, ଭୟାର୍ତ୍ତ ଚିତ୍ତରେ ସବୁ ସମୟରେ ମାନସୀଙ୍କ ପାଖେ ପାଖେ ରହିବାକୁ ଚାହେଁ ପ୍ରଳୟ ।

ନାଟକରେ ସମାଜରେ ଚାଲିଥିବା ହୀନ ରାଜନୀତିର ନିଛକ ଚିତ୍ର ଏତେ ନିଛକ ଭାବରେ ଚିତ୍ରିତ ହୋଇଛି ଯାହାର ତୁଳନା ନାହିଁ । ମନ୍ତ୍ରୀ, ସାଂସଦଙ୍କ ଲୋକ ଯେତେ ଗୁଣ୍ଡାମୀ, ମର୍ଡର, ଧର୍ଷଣ କଲେବି ତାକୁ କେମିତି ମନ୍ତ୍ରୀ ନେତାମାନେ ନିଜର କ୍ଷମତା ବଳରେ ରକ୍ଷା କରନ୍ତି, ବିଚାରପତିର ପତ୍ନୀ ଲାଞ୍ଚନେଇ ନିଜର ସ୍ୱାମୀଙ୍କୁ ବଶ କରି କିପରି ଜଘନ୍ୟ ହତ୍ୟାକାରୀ, ଧର୍ଷଣକାରୀମାନଙ୍କୁ ଖଲାସ୍ କରିଦେଇ ପାରନ୍ତି ତାହାର ଜୀବନ୍ତ ଚିତ୍ର ନାଟକରେ ଅଙ୍କିତ ହୋଇଅଛି । ଏମ୍.ପି ଘନଶ୍ୟାମ ସାହୁର ତିନି଼ଜଣ ଗୁଣ୍ଡା ସାମ୍ବାଦିକ ମନୋଜ ମହାପାତ୍ରଙ୍କୁ ହତ୍ୟା କରି, ତାର ପତ୍ନୀଙ୍କୁ ଧର୍ଷଣ କରି ଜେଲ୍ ହାଜତରେ ଥିଲେବି, ପୋଲିସ୍ ତାଙ୍କ ନାଁରେ ଚାର୍ଯସିଟ୍ ଦେଇଥିଲେ ବି ବିଖ୍ୟାତ ଷଡ଼ଯନ୍ତ୍ରକାରୀ ଏମ୍.ପି ଘନଶ୍ୟାମ ସାହୁ ବିଚାରପତି ବିପ୍ରଚରଣଙ୍କ ପତ୍ନୀ ସୁଧାଙ୍କୁ ଦୁଇକୋଟି ଟଙ୍କା ଓ ହାଇୱେ ସାଇଡ଼ରେ ବାର ଏକର ଜମି ଲାଞ୍ଚ ଦେଇ କେସ୍‌ରେ ସେ ତିନିଜଣ ଅପରାଧୀଙ୍କୁ ବିନାଦୋଷରେ ମୁକୁଳାଇ ଦେବାପରେ ସେ ତିନିଜଣ ଅପରାଧୀର ପ୍ରଧାନ ସାକ୍ଷୀ ମନୋଜ ମହାପାତ୍ରଙ୍କ ପତ୍ନୀଙ୍କୁ ହତ୍ୟା କରି ଦେଇଛନ୍ତି । ଭୟରେ ଜଡ଼ସଡ଼ ହୋଇ ରହିଥିବା ବିଚାରପତିଙ୍କ ପୁତ୍ର ପ୍ରଳୟର ସୁପ୍ତ ଚେତନା ଜାଗ୍ରତ ହୋଇଛି । ଆଖି ଆଗରେ ଘଟି ଯାଇଥିବା ଅସାମାଜିକ କାର୍ଯ୍ୟବଳୀକୁ ବରଦାସ୍ତ କରି ନ ପାରି ହଠାତ୍ ନିଜ ହାତରେ ନିଜେ ବିପ୍ଳବର ମଶାଲ ଧରି ଭ୍ରଷ୍ଟାଚାରୀମାନଙ୍କୁ ଧରାଶାୟୀ କରିବାକୁ ଉଦ୍ୟମ ଅବ୍ୟାହତ ରଖିଛି । ସେଥିରୁ କେହିବି ମୁକ୍ତି ପାଇ ପାରିନାହାନ୍ତି । ମୁଖ୍ୟ ସେଇ ତିନିଜଣ ଆସାମୀ, ଦୁର୍ନୀତିଗ୍ରସ୍ତ ମନ୍ତ୍ରୀ ସୁଦର୍ଶନ, ଏମ୍.ପି ଘନଶ୍ୟାମ, ହୋମ୍ ସେକ୍ରେଟାରୀ, ପୋଲିସ୍ ଇନିସ୍ପେକ୍ଟର୍‌ଙ୍କ ଠାରୁ ଆରମ୍ଭ କରି ଲାଞ୍ଚ ନେଇଥିବା ଜନ୍ମଦାତ୍ରୀ ସୁଧା

ଏବଂ ଅନ୍ୟାୟ ରାୟ ଦେଇଥିବା ବିଚାରପତି ପିତା ବିପ୍ରଚରଣ ଚୌଧୁରୀଙ୍କ ପର୍ଯ୍ୟନ୍ତ କେହି ବି ଯୁବଶକ୍ତିର ପ୍ରତୀକ ପ୍ରଳୟର ବିପ୍ଳବ ବହ୍ନିରୁ ବାଦ୍ ଯାଇନାହାନ୍ତି ।

ସମାଜରେ ଥିବା ସରଳତାର ପ୍ରତୀକ ସ୍ୱରୂପ କାହ୍ନୁ ନାୟକ ଚରିତ୍ରକୁ ନାଟକରେ ପ୍ରଦର୍ଶିତ କରାଯାଇଥିବା ବେଳେ ସ୍ନେହମୟୀ, ପ୍ରେମମୟୀ ମାନସୀର ଯୁବଶକ୍ତି ପ୍ରଳୟକୁ ଆହ୍ୱାନ ଓ ଅନୀତି ବିରୁଦ୍ଧରେ ବିପ୍ଳବର ଉଦ୍‌ଗୀରଣକୁ ଯଥେଷ୍ଟ ଇନ୍ଧନ ଯୋଗାଇଛି ।

ନାଟ୍ୟକାର ବିଶ୍ୱଜିତ୍ 'ସେଇ ତିନିଜଣ' ପରି ଏକ ଉଚ୍ଚମାନର ସାମାଜିକ ନାଟକ ରଚନା କରି କେବଳ ସାମ୍ପ୍ରତିକ ସମାଜର ବାସ୍ତବ ଚିତ୍ର ଚରିତ୍ରକୁ ଚିତ୍ରଣ କରିନାହାନ୍ତି ବରଂ ସମାଜରେ ଦେଖାଯାଇଥିବା ଦୁର୍ନୀତି, ଭ୍ରଷ୍ଟାଚାର ଓ ରାଜନେତାମାନଙ୍କର ହୀନ ନୀତି ତଥା କଳଙ୍କିତ ଚରିତ୍ର ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରି ନାଟ୍ୟକାରର ମହାନ୍ କର୍ତ୍ତବ୍ୟ ସଂପାଦନ କରିଅଛନ୍ତି ।

ନାଟକ 'ସେଇ ତିନିଜଣ'ରେ ଉନ୍ନତ ପାତ୍ରାଭିମୁଖୀ ସଂଳାପ ସହିତ ଯଥାର୍ଥ ନାଟକୀୟ ଦ୍ୱନ୍ଦ୍ୱ ଓ ନାଟକୀୟ ଉତ୍କଣ୍ଠା ରକ୍ଷା କରାଯାଇପାରିଛି ।

ସଂଳାପ ହେଉଛି ନାଟକର ପ୍ରାଣ । 'ସେଇ ତିନିଜଣ' ନାଟକରେ ଏପରି ସୁନ୍ଦର ସଂଳାପମାନ ସଂଯୋଜିତ ହୋଇଛି ଯାହାକି ନାଟକର ମାନବର୍ଦ୍ଧନ କରିବାରେ ସହାୟକ ହୋଇଅଛି । ଏକ ଦୃଷ୍ଟାନ୍ତ ସ୍ୱରୂପ -

ସୁଦର୍ଶନ (ମନ୍ତ୍ରୀ) - ଆଜି ଭାରି ଖୁସି ଦେଖାଯାଉଛ ଘନଶ୍ୟାମ ? କ'ଣ ହୋଇଛି ?

ଘନଶ୍ୟାମ - ଯାଙ୍କୁ ହିଁ କହନ୍ତି ଟାଣୁଆମନ୍ତ୍ରୀ । ଏମିତି ଟାଇଟ୍ କରିଦେଇଛନ୍ତି ଯେ ହୋମ୍ ସେକ୍ରେଟାରୀ ଠାରୁ ଆରମ୍ଭ କରି ଡି.ଜି, ଆଡଭୋକେଟ୍ ଜେନେରାଲ୍, ଥାନା ଅଫିସର୍ ସମସ୍ତେ କାବୁ ।

ସୁଦର୍ଶନ - ଚାର୍ଜସିଟ୍ କୋର୍ଟକୁ ଚାଲିଗଲାଣି, ସେଠି ?

ଘନଶ୍ୟାମ - କୋଉଠି, କୋର୍ଟରେ ? ସେଠି ବେଶୀ କିଛିବାଟ ମୁଁ ଆଗେଇ ଗଲିଣି । ଆଉ ଅଳ୍ପ କିଛିବାଟ ବାକୀ ଅଛି । ମନ୍ତ୍ରୀ ଚାହିଁଲେ ସେତକ ବି ପୂରଣ ହୋଇଯିବ ।

ସୁଦର୍ଶନ -କଥାଟା ସିଧାସିଧା କହ ।

ଘନଶ୍ୟାମ - ହାଇୱେକୁ ଲାଗି ସେଇ ଯୋଉ ବାର ଏକର ଜମି, ସେତକ ।

ସୁଦର୍ଶନ - ସେ ଜମିଟା ତ ଗୋଟାଏ ଫଳ ବଗିଛାପାଇଁ ରଖାଯାଇଛି । ସରକାରୀ ଫଳ ବଗିଚା ।

ଘନଶ୍ୟାମ - ଏଇଟା ବି ହବ ଗୋଟାଏ ଫଳ ବଗିଚା । ବେସରକାରୀ ବଗିଚା, ଫାର୍ମହାଉସ୍ ।

ସୁଦର୍ଶନ - ନା ନା, ସେଇଟା କେମିତି ସମ୍ଭବ ହେବ ? ମୁଁ ଅର୍ଡର ଦେଇ ସାରିଛି ।

ଘନଶ୍ୟାମ - ଅର୍ଡର ଫେରେଇ ଆଣନ୍ତୁ ।

ସୁଦର୍ଶନ - ଥରେ ଅର୍ଡର ଦେଇସାରିଲାପରେ ପୁଣି ଫେରେଇ ଆଣିବି ? କ'ଣ କହୁଛ ହେ ?

ଘନଶ୍ୟାମ - ଇଏ ଆମ ତିନିଜଣ ଲୋକଙ୍କର ଜୀବନ ମରଣର ପ୍ରଶ୍ନ । ସେମାନଙ୍କ ଜୀବନଠୁଁ କ'ଣ ଆପଣଙ୍କ ଅର୍ଡରଟା ବଡ଼ ହୋଇଗଲା ? ତା'ଛଡ଼ା ଭୁଲିଯାଉଛନ୍ତି କାହିଁକି, ଆଉ ମାତ୍ର ଛଅମାସ ପରେ ଇଲେକ୍‌ସନ୍ । ଲୋକଙ୍କୁ ପଟେଇବ କିଏ ? ପୋଲିଙ୍ଗ୍ ବୁଥ୍ ଗୁଡ଼ିକ ସମ୍ଭାଳିବ କିଏ ? ବିରୋଧୀମାନଙ୍କ ସଭା ସମିତିକୁ ଛିନ୍‌ଛତର କରିବ କିଏ ? ସେଇ ତିନିଜଣ । (ଇତ୍ୟାଦି)

(ଦୃଶ୍ୟ - ୫, ପୃ - ୫୫, ୫୬)

ଚରିତ୍ର ଚିତ୍ରଣରେ ବିଶ୍ୱଜିତ୍ ଦାସଙ୍କର ଦକ୍ଷତାର ତୁଳନା ନାହିଁ । ନାଟକ 'ସେଇ ତିନିଜଣ'ରେ ପ୍ରଳୟ, ମାନସୀ, ସୁଧା, ବିପ୍ରଚରଣ, ଶିଖା, ସୁଦର୍ଶନ, ଘନଶ୍ୟାମ, କାହ୍ନୁ ନାୟକ ଓ ଜୟନ୍ତ ଆଦି ପ୍ରତିଟି ଚରିତ୍ର ଯଥାରୀତିରେ ବେଶ୍ ସଜୀବ ଭାବେ ଅଙ୍କିତ ହୋଇଅଛନ୍ତି ।

'ସେଇ ତିନିଜଣ' ନାଟକ ରଚନା କରି ଯଶସ୍ୱୀ ନାଟ୍ୟକାର ବିଶ୍ୱଜିତ୍ ଓଡ଼ିଆ ନାଟ୍ୟ ସାହିତ୍ୟକୁ ଯେ ବିଶେଷଭାବେ ସମୃଦ୍ଧ କରିଯାଇଛନ୍ତି, କହିବାରେ ବାଧା ନାହିଁ ।

## ବିଶ୍ୱଜିତ୍ ଦାସଙ୍କ ପ୍ରଭାବଶାଳୀ ଏକାଙ୍କିକା ସମଗ୍ର

ଅନେକ ପ୍ରଭାବଶାଳୀ, ଭାବଗାଂଭୀର୍ଯ୍ୟମୟ ସ୍ୱୟଂସମ୍ପୂର୍ଣ୍ଣ ନାଟକ ରଚନା କରିବା ସହିତ ବିଶ୍ୱଜିତ୍ ଦାସ ଅନେକ ଏକାଙ୍କିକା ଓ ଛୋଟ ନାଟକ ରଚନା କରି ଓଡ଼ିଆ ଏକାଙ୍କିକା ଭଣ୍ଡାରକୁ ସମୃଦ୍ଧ କରିଅଛନ୍ତି ।

ବାମପନ୍ଥୀ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ ବିଶ୍ୱଜିତ୍ ଦାସ ଛାତ୍ରକାଳରୁ ନାଟ୍ୟ ରଚନା ନିମନ୍ତେ ବିଶେଷ ଆକର୍ଷିତ ହୋଇଥିଲେ ଏବଂ ସେହି 'ଇପ୍‌ଟା' ପାଇଁକି ସେ 'ଡାଆଣୀ', 'ଯାତ୍ରୀ ଚାଲିଛି', 'ତୃଷ୍ଣା' ଓ 'ବଇଁଶୀ' ଆଦି କେତୋଟି ଏକଙ୍କିକା ରଚନା କରିଥିବା ବେଳେ ସ୍କୁଲ, କଲେଜ ଆଦି ଶିକ୍ଷାନୁଷ୍ଠାନମାନଙ୍କ ନିମନ୍ତେ ସେ ଅନେକ ଏକାଙ୍କିକା ରଚନା କରି

ପ୍ରଶଂସିତ ହୋଇଅଛନ୍ତି । ତାଙ୍କ ଏକାଙ୍କିକା ରଚନାର ଆଭିମୁଖ୍ୟ ସଂପର୍କରେ ତାଙ୍କ ନିଜସ୍ୱ ମନ୍ତବ୍ୟରେ ସେ କହନ୍ତି – 'ସେତେବେଳେ ଏକାଙ୍କିକାର ଘୋର ଅଭାବ ଦେଖା ଦେଇଥିଲା । ସ୍କୁଲ, କଲେଜ ପିଲାଏ ବାଧକରି ବସୁଥିଲେ ଏକାଙ୍କିକା ଲେଖିବା ପାଇଁ । ମୁଁ ଏକ ପ୍ରକାର ଏକାଙ୍କିକା ଲେଖିବାପାଇଁ ବାଧ ହୋଇଛି । ରେଭେନ୍ସା କଲେଜ, ଶୈଳବାଳା ମହିଳା କଲେଜ, ମଧୁସୂଦନ ଆଇନ କଲେଜ, ଖ୍ରୀଷ୍ଟ କଲେଜ, ଷ୍ଟୁଆଟ୍ କଲେଜ୍ ଆଦି ଅନୁଷ୍ଠାନମାନଙ୍କ ପାଇଁ ମୁଁ ଏକାଙ୍କିକା ଲେଖୁଥିଲି । ଏହି ଅନୁଷ୍ଠାନ ଗୁଡ଼ିକର ବାଧବାଧକତା ମୋତେ ଏକାଙ୍କିକା ଲେଖିବାପାଇଁ ପ୍ରେରଣା ଯୋଗାଇଥିଲା ।'

ଭିନ୍ନ ଭିନ୍ନ ସମୟରେ ସେ ଖ୍ରୀଷ୍ଟ କଲେଜ ନିମନ୍ତେ 'ତନ୍ଦ୍ରା', ମଧୁସୂଦନ ଆଇନ୍ ମହାବିଦ୍ୟାଳୟ ନିମନ୍ତେ 'ଗ୍ରୀନ୍‌ରୁମ୍', ଶୈଳବାଳା ମହିଳା ମହାବିଦ୍ୟାଳୟ ନିମନ୍ତେ 'ସୋ' ଓ ରେଭେନ୍ସା କଲେଜ ପାଇଁ 'ବ୍ୟର୍ଥଲଗ୍ନ' ଆଦି ଏକାଙ୍କିକା ରଚନା କରି ବହୁଭାବେ ପ୍ରଶଂସା ଅର୍ଜନ କରିଅଛନ୍ତି । ବିଶ୍ୱଜିତ୍‌ଙ୍କ 'ଗୋଟିଏ ଦୃଶ୍ୟ' ଏକାଙ୍କିକା ଭାରତୀୟ ଗଣ ନାଟ୍ୟସଂଘ ଦ୍ୱାରା ୧୯୫୬ ମସିହାରେ ଅଭିନୀତ ହୋଇ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବା ଜଣାଯାଏ । ବିଶ୍ୱଜିତ୍ ଦାସଙ୍କର ଅନେକ ଛୋଟ ନାଟକ ଓ ଏକାଙ୍କିକା ବେତାର ନାଟକ ଭାବେ ମଧ୍ୟ ଲୋକପ୍ରିୟତା ଅର୍ଜନ କରିଅଛି ।

ବିଶ୍ୱଜିତ୍ ଦାସଙ୍କ ରଚିତ ସମଗ୍ର ଏକାଙ୍କିକାର ତାଲିକା ଏଇ ଲେଖକର ହସ୍ତଗତ ହୋଇ ନ ଥିଲେ ମଧ୍ୟ ତାଙ୍କ ରଚିତ ଲୋକପ୍ରିୟ ଏକାଙ୍କିକାମାନଙ୍କ ମଧ୍ୟରେ 'ଅନ୍ତରା', 'ଛଦ୍ମବେଶୀ, 'ସୋ', 'କାଚ', 'ଜନ୍ମନେଲି', 'ଚିଫ୍‌ଗେଷ୍ଟ୍', 'ପ୍ରବେଶ ପ୍ରସ୍ଥାନ', 'ପିକ୍‌ନିକ୍', 'ଗେଷ୍ଟହାଉସ୍' 'ଇଣ୍ଟରଭିୟୁ', 'ସୂର୍ଯ୍ୟାସ୍ତ' 'ନେପଥ୍ୟେ', 'ଗୋଟିଏ ଦୃଶ୍ୟ' 'ଶ୍ରେଷ୍ଠାଂଶେ ନଟବର', 'ବ୍ୟର୍ଥଲଗ୍ନ', 'ମୁଖା', 'ଚୋର', 'ବଇଁଶୀ', 'ଦାନୀ', 'ତୃଷ୍ଣା', 'ତନ୍ଦ୍ରା', 'ଯାତ୍ରାଚାଲିଛି', 'ଡାଆଣୀ', 'ମୁଖ୍ୟଅତିଥି', 'ସୁଟିଂ ଚାଲିଛି, 'ଗ୍ରୀନ୍‌ରୁମ୍', 'କଲେଜ କ୍ୟାଣ୍ଟିନ୍', 'ନିର୍ଦ୍ଧାରିତ ଶିକ୍ଷାଙ୍କ ଅନୁପସ୍ଥିତିରେ' ଓ 'ବର୍ତ୍ତମାନ' ଆଦି ଅନେକ ଏକାଙ୍କିକା ମଧ୍ୟରୁ କେତୋଟି ଏକାଙ୍କିକାର ଗତିଶୀଳତା ଓ ନାଟକୀୟତା ସଂପର୍କରେ ଏଠାରେ କିଞ୍ଚିତ୍ ଆଲୋକପାତ କରାଗଲା । ବିଶ୍ୱଜିତ୍ ଦାସଙ୍କ ରଚିତ 'ବର୍ତ୍ତମାନ' ଛୋଟନାଟକକୁ ପ୍ରଥମ ଓଡ଼ିଆ ପଥପ୍ରାନ୍ତର ନାଟକର ମାନ୍ୟତା ପ୍ରଦାନ କରାଯାଇପାରେ ।

## 'ଛଦ୍ମବେଶୀ'ର ନାଟ୍ୟ ବୈଚିତ୍ର୍ୟ

ନାଟ୍ୟ ରଚନାରେ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିବା ନାଟ୍ୟକାର ବିଶ୍ୱଜିତ୍ ଦାସ ତାଙ୍କ ନାଟ୍ୟକାର ଜୀବନ ଆରମ୍ଭରୁ ହିଁ ଏକାଙ୍କିକା ରଚନା କରି ବିଶେଷ ଲୋକପ୍ରିୟତା ଅର୍ଜନ

କରି ଆସିଛନ୍ତି । ତାଙ୍କ ରଚିତ ଏକାଙ୍କିକା ଗୁଡ଼ିକ ସ୍କୁଲ, କଲେଜ ଉତ୍ସବମାନଙ୍କରେ ଅଭିନୀତ ହେଉଥିବା ବେଳେ ଆଉ କେତେକ କ୍ଷୁଦ୍ରନାଟ୍ୟ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିପାରିଛି ।

'ଛଦ୍ମବେଶୀ' (୨୦୦୦) ବିଶ୍ୱଜିତ୍ ଦାସଙ୍କର ଏକ ଆକର୍ଷଣୀୟ ହାସ୍ୟରସାତ୍ମକ ଏକାଙ୍କିକା । ଏହାର କଥାବସ୍ତୁ ଅତ୍ୟନ୍ତ କ୍ଷୁଦ୍ର ହେଲେ ମଧ୍ୟ ତାହାର ହାସ୍ୟରସପୂର୍ଣ୍ଣ ସଂଳାପ ଓ ନାଟକୀୟ ଭାବାବେଗ ଯେ ଦର୍ଶକଙ୍କୁ ବାନ୍ଧି ରଖିବାକୁ ସମର୍ଥ ଏଥିରେ ସନ୍ଦେହ ନାହିଁ । ଏକାଙ୍କିକାଟିର ମୁଖ୍ୟ ପ୍ରତିପାଦ୍ୟ କଥାବସ୍ତୁ ହେଲା ବୈକୁଣ୍ଠ ବାବୁ ଜଣେ ରାଜନେତା ଏବଂ ସାଂସଦ । ତାଙ୍କର ସ୍ତ୍ରୀ ପ୍ରଭାବତୀ ଏବଂ ଭଗ୍ନୀ-ମିତ୍ରା । ଜୟନ୍ତ ଜଣେ ଯୁବନେତା ଏବଂ ମିତ୍ରାର ସ୍ୱାମୀ । ବୈକୁଣ୍ଠବାବୁ ଏବଂ ଜୟନ୍ତ ଏକା ରାଜନୈତିକ ଦଳର ସଦସ୍ୟ ନୁହଁନ୍ତି । ବୈକୁଣ୍ଠବାବୁ କେଉଁ ଆଦର୍ଶର କଥା କହି କେଉଁଠି ଭାଷଣ ଦେଉଥିବାବେଳେ, ଜୟନ୍ତ ଭିନ୍ନ ବିଷୟବସ୍ତୁ ନେଇ ଅନର୍ଗଳ ଭାଷଣ ଦେଇଥାନ୍ତି । ଦୁଇ ଭିନ୍ନ ମତ ଭିନ୍ନ ଆଦର୍ଶର ବାର୍ତ୍ତା ପ୍ରଚାର କରୁଥିବା ଦୁଇ ନେତା ଦୁଇ ଭିନ୍ନ ଦିଗରେ ଗତି କରିଛନ୍ତି ।

ଏହା ମଧ୍ୟରେ ନାଟକକୁ ଗତିଶୀଳ କରିବା ନିମନ୍ତେ ନାଟ୍ୟକାର ଆଉ ଏକ ଘଟଣାର ସୂତ୍ରପାତ କରିଛନ୍ତି । ସ୍ୱର୍ଗତ ରବିଶଙ୍କର ମର୍ଦ୍ଦରାଜ ତାଙ୍କ ନିମନ୍ତେ ଦୁଇଲକ୍ଷ ଟଙ୍କାର ଏକ ଉଇଲ୍ କରି ଯାଇଥିବାର ଏକ ଚିଠି ହଠାତ୍ ପାଇ ନେତା ବୈକୁଣ୍ଠ ନାୟକ ଆନନ୍ଦିତ ହୋଇଥିଲେ ମଧ୍ୟ ତହିଁରେ ଥିବା ଅନ୍ୟ ଏକ ସର୍ତ୍ତ ତାଙ୍କ ପାଇଁ ଚିନ୍ତାର କାରଣ ହୋଇଛି । ସର୍ତ୍ତଟି ହେଲା ସେହି ଦୁଇଲକ୍ଷ ଟଙ୍କା ପାଇବାକୁ ହେଲେ ବୈକୁଣ୍ଠବାବୁଙ୍କୁ ତାଙ୍କ ନାମ ଶେଷରେ ଗଜ ଗୋବର୍ଦ୍ଧନ ସିଂ ଉପାଧିଟି ଗ୍ରହଣ କରିବାକୁ ହେବ । ଆଖିଆଗରେ ଦୁଇଲକ୍ଷ ଟଙ୍କାର ଉଇଲ । କିପରି ସେହି ଦୁଇଲକ୍ଷ ଟଙ୍କା ହାତେଇ ନେବେ, ସେହି ଭାବନାରେ ସେ ବ୍ୟସ୍ତ ରହିଲେ । ବୈକୁଣ୍ଠ ବାବୁ ଏ ସମ୍ପର୍କରେ ନିଜ ପତ୍ନୀ ପ୍ରଭାବତୀ ଦେବୀ ଓ ଭଗ୍ନୀପତି ଜୟନ୍ତଙ୍କ ସହ ପରାମର୍ଶ କରିବାକୁ ଲାଗିଲେ । ତା'ପରେ ଓକିଲ ମଣିଶଙ୍କର ମର୍ଦ୍ଦରାଜ ଆସି ପହଞ୍ଚିଛନ୍ତି । ଓକିଲଙ୍କ ସଂଳାପ ହାସ୍ୟରସ ସୃଷ୍ଟି କରିଥିଲେ ମଧ୍ୟ ଓକିଲଙ୍କଠାରୁ ଉଇଲ୍‌ର ଆକର୍ଷଣୀୟ ପ୍ରସଙ୍ଗ ଜାଣି ଦୁଇଲକ୍ଷ ଟଙ୍କା ପାଇବା ପାଇଁ ସମସ୍ତେ ବ୍ୟସ୍ତ ହୋଇ ଉଠିଛନ୍ତି । ବୈକୁଣ୍ଠ ବାବୁ, ତାଙ୍କ ପତ୍ନୀ ପ୍ରଭାବତୀ ଦେବୀ, ମିତ୍ରା ଦେବୀ ଓ ଶେଷକୁ ଆଦର୍ଶ ଯୁବନେତା ଜୟନ୍ତ ମଧ୍ୟ ଦୁଇଲକ୍ଷ ଟଙ୍କାର ଲୋଭ ଛାଡ଼ିପାରି ନାହାନ୍ତି । ଅର୍ଥଲୋଭ ମଣିଷକୁ କିପରି କବଳିତ କରେ ଏବଂ ସେହି ଅର୍ଥ ପ୍ରାପ୍ତି ନିମନ୍ତେ ମଣିଷ କିପରି ବେଳେ ବେଳେ ତା'ର ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେବାକୁ ପଶ୍ଚାତ୍‌ପଦ ହୁଏ ନାହିଁ, ତାହାର ଏକ ସ୍ପଷ୍ଟ ଚିତ୍ର ଅଙ୍କିତ ହୋଇଛି । ଏହି ପ୍ରହେଳିକାର ଛତ୍ରେ ଛତ୍ରେ ଏକାଙ୍କିକାର ଯବନିକା ନଇଁ ଆସିଛି ।

ନାଟକରେ ଅନ୍ତର୍ଦ୍ୱନ୍ଦ୍ୱ ଉପୁଜିଥିଲେ ମଧ୍ୟ ଦୁଇଲକ୍ଷ ଟଙ୍କାର ଲୋଭରେ ମଣିଷ କିପରି

ଛଦ୍ମବେଶର ଗଣ୍ଡିତଳେ ଆଶ୍ରୟ ନେବାକୁ ଅଣ୍ଡାଭିଡ଼ି ବାହାରି ଆସେ, ତାହା ନିଛକ ଭାବେ ଅଙ୍କିତ ହୋଇଅଛି । ପ୍ରହସନାତ୍ମକ ଦୃଶ୍ୟର ଭେଳିକିରେ ଦର୍ଶକ/ପାଠକ ମୋହମୁଗ୍ଧ ହୋଇଛନ୍ତି ଏବଂ ଏକାଙ୍କିକାର ମଞ୍ଚ ସାଫଲ୍ୟ ସୁନ୍ଦର ଭାବରେ ପ୍ରତିପାଦିତ ହୋଇଛି ।

ନାଟ୍ୟକାର ବିଶ୍ୱଜିତ୍ ଦାସ ଏପରି ଏକ ମନୋଜ୍ଞ ଏକାଙ୍କିକା ରଚନା କରି ଓଡ଼ିଆ ଏକାଙ୍କିକା ସାହିତ୍ୟକୁ ଯେ ସମୃଦ୍ଧ କରିପାରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଏହି 'ଛଦ୍ମବେଶୀ' ଏକାଙ୍କିକାର ମୁଖ୍ୟ ଚରିତ୍ର ବୈକୁଣ୍ଠ ଓ ଜୟନ୍ତଙ୍କ ଚରିତ୍ର ଯଥାରୀତିରେ ଅଙ୍କିତ ହୋଇଥିବା ବେଳେ ପାର୍ଶ୍ୱଚରିତ୍ର ପ୍ରଭାବତୀ, ଓକିଲ ମଣିଶଙ୍କର ଓ ମିତ୍ରାଙ୍କ ଚରିତ୍ର ମଧ୍ୟ ସଜୀବ ଭାବେ ଅଙ୍କିତ ହୋଇଛି । ନାଟକର ସଂଳାପ, ସଂଘାତ ଓ ନାଟକୀୟତା ଆଦି ପ୍ରତିଟି ନାଟ୍ୟ ଉପାଦାନ ଯଥାରୀତିରେ ସଂଯୋଜିତ ହୋଇଛି ।

## ବିଶ୍ୱଜିତ୍‌ଙ୍କ 'ଚିଫ୍‌ଗେଷ୍ଟ୍' : ଏକ ଆଲେଖ୍ୟ

ବିଶ୍ୱଜିତ୍ ଦାସଙ୍କ ଏକାଙ୍କିକା ଗୁଡ଼ିକରେ ହାସ୍ୟରସ ସହିତ ନାଟକୀୟ ଦ୍ୱନ୍ଦ୍ୱ ଓ ପାତ୍ରାଭିମୁଖୀ ସଂଳାପ ଏକାଙ୍କିକା ଗୁଡ଼ିକୁ ସମୃଦ୍ଧ କରିପାରିଛି । ଗୋଟିଏ ଗୋଟିଏ କ୍ଷୁଦ୍ର କଥାବସ୍ତୁର ଛତ୍ରେଛତ୍ରେ କ୍ଷଣିକ ଆବେଗର ମିଶ୍ରରାଗରେ ନାଟିକା ଗୁଡ଼ିକ ବେଶ୍ ପ୍ରଭାବଶାଳୀ ଓ ଚିତ୍ତାକର୍ଷକ ହୋଇପାରିଛି ।

'ଚିଫ୍‌ଗେଷ୍ଟ'(୨୦୦୦) ଏକାଙ୍କିକାରେ ଏକ ହାସ୍ୟୋଦ୍ଦୀପକ ନାଟକୀୟ ଭାବାବେଗର ଚିତ୍ର ଅଙ୍କିତ ହୋଇଅଛି ।

ଏକ ଉତ୍ସବକୁ ସାହିତ୍ୟିକ ଭୋଳାନାଥ ଆସି ଯୋଗଦାନ କରିଥିଲେ ମଧ୍ୟ କର୍ମକର୍ତ୍ତାମାନେ ସଭାକାର୍ଯ୍ୟ ଯଥାରୀତିରେ ଆୟୋଜନ କରିବାକୁ ସକ୍ଷମ ହୋଇ ପାରିନାହାନ୍ତି । ଚିଫ୍‌ଗେଷ୍ଟ୍ ହୋଇ ଆସିଥିବା ସାହିତ୍ୟିକ ଭୋଳାନାଥ ଲାଷ୍ଟ୍ ଟ୍ରେନ୍‌ରେ ଫେରିବା ନିମନ୍ତେ ବ୍ୟସ୍ତ ବିବ୍ରତ ହେଉଥିବାବେଳେ କର୍ମକର୍ତ୍ତାମାନେ ଟାଳଟୁଳ ନୀତି ପ୍ରୟୋଗ କରିଛନ୍ତି । ଫଳରେ ସଭାକାର୍ଯ୍ୟ ଆରମ୍ଭ ହୋଇପାରିନାହିଁ । ସଭାସ୍ଥଳରେ ଦର୍ଶକଙ୍କ ସମାଗମ ହୋଇନାହିଁ । ତେଣୁ ସିନେମା ଭାଙ୍ଗିଲେ ସିନେମା ହଲ୍‌ରୁ ଲୋକମାନଙ୍କୁ ଅଣାଇ ସଭାକାର୍ଯ୍ୟ ସମାପନ କରିବାର ଯୋଜନା କରି ମଧ୍ୟ ତାହା କାର୍ଯ୍ୟରେ ପରିଣତ ହୋଇପାରିନାହିଁ । ଡାଇବେଟିସ୍ ରୋଗଗ୍ରସ୍ତ ଭୋଳାନାଥଙ୍କ ବାରଣ ସତ୍ତ୍ୱେ ତାଙ୍କୁ ମିଠାଲଡୁ ଖୁଆଇ ଏକ ହାସ୍ୟରସାତ୍ମକ ପରିସ୍ଥିତି ସୃଷ୍ଟି କରିଛନ୍ତି ନାଟ୍ୟକାର । ଆୟୋଜକ ଓ କର୍ମକର୍ତ୍ତାମାନଙ୍କ ଅସଂଗଠିତ ବ୍ୟବସ୍ଥାରେ ବିବ୍ରତ ଚିଫ୍‌ଗେଷ୍ଟ ଭୋଳାନାଥଙ୍କ ସଂଳାପ ବେଶ୍ ଉଲ୍ଲେଖ୍ୟଯୋଗ୍ୟ ହୋଇଅଛି । ଯଥା:-

ଭୋଳାନାଥ - ମୁଁ ସାହିତ୍ୟ ସାଧନା ଛାଡ଼ି ଦେବି ।

ଭୀମଚରଣ – ଇୟେ କ'ଣ କହୁଛନ୍ତି ସାର୍ ? ଆପଣ ସାହିତ୍ୟ ସାଧନା ଛାଡ଼ିଦେଲେ ଆମ ସାହିତ୍ୟ ସଭାରେ ଚିଫ୍‌ଗେଷ୍ଟ ପୁଣି କିଏ ହେବ?

ଭୋଳାନାଥ - ଯିଏ ହବ ହଉ, ମୁଁ ଚିଫ୍‌ଗେଷ୍ଟ ହେବିନାହିଁ।

ଭୀମଚରଣ – ହେବନାହିଁ କହିଲେ ହବ? ଏଇତ ହେଇଛନ୍ତି।

ଭୋଳାନାଥ - ନାଇ ନାଇଁ ମୋତେ ଛାଡ଼ିଦିଅନ୍ତୁ .... ମୋତେ ଛାଡ଼ି ଦିଅନ୍ତୁ

ଭୀମଚରଣ – କିନ୍ତୁ ଆମ ସଭା ? ଆମ ସଭାରେ ଚିଫ୍‌ଗେଷ୍ଟ ହେବ କିଏ ? ସଭାତ ଆରମ୍ଭ ହେବା ଉପରେ। ଆଉ ପାଞ୍ଚ ମିନିଟ୍।

ଭୋଳାନାଥ - ପାଞ୍ଚ ମିନିଟ୍?

ଭୀମଚରଣ – ହଁ ହଁ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ଏଇ ସମୟ ଭିତରେ ବରଂ ରିଫ୍ରେସ୍‌ମେଣ୍ଟଟା ଆପଣ ସାରିଦିଅନ୍ତୁ।

ଅଳ୍ପ ସମୟ ସୀମା ମଧ୍ୟରେ ଛୋଟ ନାଟକ ରଚନାରେ ସିଦ୍ଧହସ୍ତ ନାଟ୍ୟକାର ବିଶ୍ୱଜିତ୍ ଦାସ ହାସ୍ୟରସ ମଧରେ ବିଷୟବସ୍ତୁର ଚମତ୍କାର ଉପସ୍ଥାପନା କରି ଦର୍ଶକଙ୍କୁ ମୂଳରୁ ଶେଷଯାଏ ମାୟାଛନ୍ନ କରି ଧରି ରଖିବାରେ ସମର୍ଥ ହୋଇପାରନ୍ତି।

'ଚିଫ୍‌ଗେଷ୍ଟ' ଯେ ବିଶ୍ୱଜିତ୍‌ଙ୍କର ଏକ ଚମତ୍କାର ସଫଳ ନାଟ୍ୟକୃତି – ଏଥିରେ ସନ୍ଦେହ ନାହିଁ।

## ସୋ

'ସୋ' (୨୦୦୦) ବିଶ୍ୱଜିତ୍ ଦାସଙ୍କର ଅନ୍ୟ ଏକ ହାସ୍ୟରସାତ୍ମକ ଏକାଙ୍କିକା। ବିଶ୍ୱଜିତ୍ ଦାସଙ୍କ 'ପ୍ରବେଶ ପ୍ରସ୍ଥାନ' ଏକାଙ୍କିକାଟି ନାରୀ ଚରିତ୍ର ବିହୀନ ହୋଇଥିଲାବେଳେ 'ସୋ' ଏକାଙ୍କିକାଟି ପୁରୁଷ ଚରିତ୍ର ବିହୀନ ଏକ ଆବେଗମୟ ଏକାଙ୍କିକା।

ଏକାଙ୍କିକାର ମୁଖ୍ୟ କଥାବସ୍ତୁ ହେଲା – ରାଧାରାଣୀଙ୍କର ତିନୋଟି ଝିଅ। ସୀତା, ମୀତା ଓ ଗୀତା। ସୀତାର ବିବାହ ନିମନ୍ତେ ରାଧାରାଣୀ ବ୍ୟସ୍ତ। ସୀତାର ବିବାହ ନିମନ୍ତେ ରାଧାରାଣୀଙ୍କ ପ୍ରତିବେଶୀନୀ ଡଲି ଏକ ବିବାହ ପ୍ରସ୍ତାବ ପକାଇଛନ୍ତି। ସୀତାକୁ ଦେଖିବାପାଇଁ ବରର ମାଆ ଯୋଗମାୟା ଓ ଭାଉଜ ସ୍ୱର୍ଣ୍ଣଲତା ଏକ ନିର୍ଦ୍ଧାରିତ ଦିନ ଆସିଛନ୍ତି। ସେମାନେ ରାଧାରାଣୀଙ୍କ ଘରକୁ ଆସବା ପୂର୍ବରୁ ଡଲି ରାଧାରାଣୀ କିପରି ଶାଳିନତାର ସହ କଥାବାର୍ତ୍ତା କରିବେ, କିପରି ସୌଜନ୍ୟପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିବେ ତାହା ରାଧାରାଣୀଙ୍କୁ ଶିଖାଇବା ସଂଗେ ସଂଗେ ସୀତା କିପରି ଭାବେ ସେମାନଙ୍କ ସମ୍ମୁଖୀନ ହେବ, ରକ୍ଷଣଶିଳା ଶାଶୁ ଯୋଗମାୟାଙ୍କୁ କିପରି ବ୍ୟବହାର ପ୍ରଦର୍ଶନ କରିବ, ପୁଣି ଶିକ୍ଷିତା ସ୍ୱର୍ଣ୍ଣମୟୀଙ୍କ ପ୍ରଶ୍ନର କିପରି

ଜଣେ ଆଧୁନିକା ତରୁଣୀ ଭାବେ ଉତ୍ତର ଦେବ, ଶିଖାଇ ଦେଇଥିଲେ । ନିର୍ଦ୍ଧାରିତ ଦିନରେ ସମୟକ୍ରମେ ସୀତାକୁ ଦେଖିବାକୁ ଯୋଗମାୟା ଓ ସ୍ୱର୍ଣ୍ଣଲତା ଆସି ପହଞ୍ଚନ୍ତି । ସେମାନଙ୍କର ପହଞ୍ଚିବା ଓ ସୀତାକୁ ଦେଖି ତା' ସହିତ କଥାବାର୍ତ୍ତା କରିବା ଭିତରେ ସମସ୍ତଙ୍କର ସବୁ ଛଳନା ଧରାପଡ଼ି ଯାଇଛି । ସେହି ପ୍ରସ୍ତାବିତ ବର ଜଣେ ଆଇ.ଏସ୍.ଏସ୍ ପରୀକ୍ଷାର୍ଥୀ ବୋଲି ପ୍ରତିବେଶୀନୀ ଯେଉଁ ଧାରଣା ଜନ୍ମାଇଥିଲେ – ତାହା ସତ୍ୟ ନୁହେଁ । ସ୍ୱର୍ଣ୍ଣଲତାଙ୍କ ସ୍ୱାମୀ ଆର୍ମିରେ କ୍ୟାପ୍‌ଟେନ୍ ଥିବା କଥା ମିଛ । ସେମାନଙ୍କର କାର୍ ଅଛି, ଡ୍ରାଇଭର୍ ଛୁଟିରେ ଯାଇଛି ବୋଲି ସେମାନେ ରିକ୍‌ସାରେ ଆସିଛନ୍ତି ବୋଲି କହିଥିବା କଥା ମଧ୍ୟ ମିଛ । ବିବାହ ପରି ଏକ ପବିତ୍ର ଶୁଭକାର୍ଯ୍ୟ ପୂର୍ବରୁ ଏପରି ମିଥ୍ୟା, ଏପରି ଛଳନାଯୁକ୍ତ କଥାବାର୍ତ୍ତା ସମଗ୍ର ପରିବେଶକୁ ନିମ୍ନଗାମୀ କରିଦେଇଥିଲେ ମଧ୍ୟ ଏକାଙ୍କିକାର ନାଟକୀୟତାର ମାନବୃଦ୍ଧି କରିବାରେ ଯଥେଷ୍ଟ ସହାୟକ ହୋଇଅଛି ।

ନାଟକ କ୍ଷୁଦ୍ର ହେଲେ ମଧ୍ୟ ଏହାର ସଂଳାପ, ବର୍ଣ୍ଣନା ପରିପାଟୀ ଯଥାରୀତିରେ ଗଢ଼ି ଉଠିଛି । ସୀତା, ଡଲି, ଯୋଗମାୟା, ରାଧାରାଣୀ ଆଦି ଏକାଙ୍କିକାର ପ୍ରତିଟି ଚରିତ୍ର ବେଶ୍ ଯଥାରୀତିରେ ଅଙ୍କିତ ହୋଇଅଛି । ସାଂପ୍ରତିକ ସମାଜରେ ମିଥ୍ୟା ଓ ଛଳନାର ଆଶ୍ରୟ ନେଇ କିପରି ବିବାହ ପ୍ରସ୍ତାବମାନ ନିର୍ଦ୍ଧାରିତ ହୋଇଯାଉଛି – ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ପରିବେଷିତ ହୋଇଛି 'ସୋ' ଏକାଙ୍କିକାରେ । ଏକାଙ୍କିକା ରଚନାରେ ନାଟ୍ୟକାର ବିଶ୍ୱଜିତ୍‌ଙ୍କର ବୈଶିଷ୍ଟ୍ୟ ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ।

## ପିକ୍‌ନିକ୍

ବଣଭୋଜିକୁ ଇଂରାଜୀରେ 'ପିକ୍‌ନିକ୍' କହନ୍ତି । ବଣଭୋଜିର ଦୃଶ୍ୟକୁ ନେଇ ବିଶ୍ୱଜିତ୍ ଦାସଙ୍କର ଏଇ 'ପିକ୍‌ନିକ୍' (୨୦୦୦) ଏକାଙ୍କିକା ରଚିତ । କୌଣସି ମହିଳା ମହାବିଦ୍ୟାଳୟର ନାଟ୍ୟ ସଂସଦ କିମ୍ବା ବାର୍ଷିକୋତ୍ସବରେ ମଞ୍ଚସ୍ଥ ନିମନ୍ତେ ଏହା ବୋଧହୁଏ ରଚିତ । ଏହି ଏକାଙ୍କିକାରେ ପୁରୁଷ ଚରିତ୍ର ଆଦୌ ନାହିଁ । କେବଳ ଛଅଟି ତରୁଣୀ ଚରିତ୍ର । ଶୀଳା, ମିନି ଓ ଲୀନା କଲେଜର ତିନି ସହପାଠିନୀଙ୍କ ସହିତ ସେମାନଙ୍କର ତିନି କନିଷ୍ଠା ଭଉଣୀ । ଯଥାକ୍ରମେ –ସଂଜୁ, ଦୀପୁ ଓ କୁନି । ଛଅଜଣଯାକ ମିଶି ଯାଇଛନ୍ତି ପିକ୍‌ନିକ୍ କରିବାକୁ କୌଣସି ଏକ ପାହାଡ଼ିଆ ଅରଣ୍ୟ ଅଞ୍ଚଳକୁ । ଏହି ପାହାଡ଼ିଆ ଅଞ୍ଚଳର ପ୍ରାକୃତିକ ଦୃଶ୍ୟକୁ ମନଭରି ଉପଭୋଗ କରିବା ନିମନ୍ତେ ତାଙ୍କର ଏହି ବଣଭୋଜିର ଆୟୋଜନ । ଦିନ ଦ୍ୱିପ୍ରହର, ପାହାଡ଼ ଚୂଡ଼ାର ଦୁଇ କୋଣରେ ଦୁଇ ତରୁଣୀ ମିନି ଓ ଲୀନା ମୁଗ୍ଧ ଦୃଷ୍ଟିରେ ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥିବାବେଳେ ସେମାନଙ୍କ ଠାରୁ କିଛି ବ୍ୟବଧାନରେ ବସି

ଶୀଳା ନିବିଷ୍ଟ ଚିତ୍ତରେ କବିତା ଗ୍ରନ୍ଥ ଅଧ୍ୟୟନରତା । ଅଦୂରରେ ଅପାଶୋରା ନଦୀର ମନୋରମ ଦୃଶ୍ୟ ସହିତ ନୀଳ ଆକାଶରୁ ଝରିପଡୁଥିବା ସୂର୍ଯ୍ୟକିରଣ ସେମାନଙ୍କ ମନରେ ଭାବାନ୍ତର ସୃଷ୍ଟି କରିଛି । ଆଲୋଚନାକ୍ରମରେ ରେଳ ଯିବାର ଦୃଶ୍ୟ, କାରାଖାନାର ଚିମିନିରୁ ଧୂଆଁ ଉଠୁଥିବାର ଦୃଶ୍ୟ ଉପରେ ସେମାନଙ୍କ ଭାବନା ଓ ଆଲୋଚନା ଲମ୍ବିଯାଇଛି । ତା'ପରେ ତାଙ୍କ ଆଲୋଚନା ପରିସରକୁ ଆସିଯାଇଛି କବି ଓ କବିତାର ତର୍ଜମା । ପ୍ରାଚୀନ କବିତା ଓ ଅତ୍ୟାଧୁନିକ କବିତାର ଅଙ୍ଗ ଓ ଆତ୍ମା ସହିତ ସେସବୁ କବିତା ମଧ୍ୟରେ ଥିବା ବ୍ୟବଧାନ ଏବଂ ଭିନ୍ନତା ସଂପର୍କରେ ସବିଶେଷ ଆଲୋଚନା ହୋଇଛି । ବିପ୍ଳବୀ କବି ମାର୍ତ୍ତଣ୍ଡ ଗରାବଡ୍ଡୁଙ୍କ କବିତା ଉପରେ ଶୀଳା ମନ୍ତବ୍ୟ ପ୍ରଦାନ କରି ତାଙ୍କ କବିତାର ବୈଶିଷ୍ଟ୍ୟକୁ ପ୍ରଶଂସା କରୁଥିବାବେଳେ ମିନି ଅଳଙ୍କାର ବିଶାରଦ ରଙ୍ଗତରଙ୍ଗ ପଟ୍ଟଯୋଶୀଙ୍କ ତ୍ରିଭୁବନେଶ୍ୱର କାବ୍ୟର ତର୍ଜମା କରିଛି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ପ୍ରାକୃତିକ ସୌନ୍ଦର୍ଯ୍ୟ ପାଟଯୋଷୀଙ୍କ କବିତାରେ ଅତ୍ୟନ୍ତ କମନୀୟ ଭାବରେ ବର୍ଣ୍ଣିତ ହୋଇଛି ବୋଲି ମିନି ମନ୍ତବ୍ୟ ଦେଲାବେଳେ ଶୀଳା ଆଧୁନିକ କବିତାର ମହନୀୟତା ସଂପର୍କରେ ଆଲୋକପାତ କରିଛି । ଏମାନଙ୍କର ଏପ୍ରକାର ଆଲୋଚନା ସରଗରମ ହେବାକୁ ଯାଉଥିବାବେଳେ ଭୋଜି ଆୟୋଜନରେ ନାନାଦି ବିଭ୍ରାଟ ଉପଗତ ହୋଇଛି । ମସଲା ନାହିଁ ତ ଲୁଣ ଖୋଜା ହେଉଛି । ବିସ୍କୁଟ୍ ପ୍ୟାକେଟ୍ ଆସି ନାହିଁତ ଜାଳ ଜଳୁନି । ଶେଷକୁ ସେମାନେ ମସଲା ବିହୀନ ଖିଚୁଡ଼ି ଓ ଆଳୁ ଚକଟା ପ୍ରସ୍ତୁତ କରି ତହିଁରେ ତାଙ୍କର ବଣଭୋଜି ଭୋଜନକୁ ସୀମିତ ରଖି ସନ୍ତୋଷ ଲାଭ କରିବାକୁ ଶେଷ ନିଷ୍ପତ୍ତି ନେଇଥିଲେ ମଧ୍ୟ ଜାଳ ଜଳୁନଥିବାରୁ ବଣଭୋଜିର ପ୍ରକୃତ ମାଧୁରିମା ମଉଳିବାକୁ ବସିଛି ।

ନାଟ୍ୟକାର ବିଶ୍ୱଜିତ୍ ଦାସ ଅତ୍ୟନ୍ତ ସୁନ୍ଦରଭାବେ ଏତେ ଛୋଟ କଥାବସ୍ତୁଟିକୁ ଉପଜୀବ୍ୟ କରି ସୁନ୍ଦର ଏକାଙ୍କିକାଟିଏ ରଚନା କରି ଓଡ଼ିଆ ଏକାଙ୍କିକା ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ଆବଶ୍ୟକ ଅନୁଯାୟୀ ଚରିତ୍ର ଗୁଡ଼ିକ ଯଥାରୀତିରେ ସଂକ୍ଷିପ୍ତଭାବେ ଚିତ୍ରିତ ହୋଇଥିବାବେଳେ ଯଥେଷ୍ଟ ହାସ୍ୟରସ ପରିବେଷଣରେ ସହାୟକ ହୋଇଅଛି ।

## ପ୍ରବେଶ ପ୍ରସ୍ଥାନ

'ପ୍ରବେଶ ପ୍ରସ୍ଥାନ'(୨୦୦୦) ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ଅନ୍ୟ ଏକ ଚମତ୍କାର ଏକାଙ୍କିକା । ଏହି ଏକାଙ୍କିକାଟି ଏପରି ମନୋଜ୍ଞ ପରିପାଟୀରେ ରଚିତ ହୋଇଛି, ଯେପରିକି ଅଳ୍ପ କେତେକ ସମୟ ପାଇଁ ନାଟକ ଦର୍ଶକଙ୍କୁ ବାନ୍ଧି ରଖିବାକୁ ସମର୍ଥ ଉତ୍କଣ୍ଠାର ବଳୟ ଭିତରେ । ଦୃଶ୍ୟ ଆରମ୍ଭ ହୋଇଛି ରାୟ ବାହାଦୂରଙ୍କ ନିଧିବାବୁଙ୍କ ବୈଠକ ଖାନାରୁ । ପ୍ରବେଶ କରିଛନ୍ତି ଜଣେ ଆଗନ୍ତୁକ – ଯେକି ନିଜକୁ ଗୌତମବୁଦ୍ଧ ବୋଲି ପରିଚିତ

କରାଉଛନ୍ତି ଏବଂ ଗୃହର ପ୍ରତ୍ୟେକ ସଦସ୍ୟଙ୍କ ନିକଟରେ ଏକ ଭେଳିକି ସୃଷ୍ଟିକରି ସମଗ୍ର ବାତାବରଣରେ ଏକ ହଟଚମକ ସୃଷ୍ଟି କରିଦେଇଛନ୍ତି । ପ୍ରଥମେ ଆଗନ୍ତୁକଙ୍କର ସାକ୍ଷାତ ହୋଇଛି ଗୃହର ବିଶ୍ୱାସୀ ଭୃତ୍ୟ ଚନ୍ଦ୍ରମଣିଙ୍କ ସହିତ । ଚନ୍ଦ୍ରମଣିଙ୍କୁ ସେ ବହୁ ଅସମାହିତ ପ୍ରଶ୍ନ ପଚାରି ପ୍ରଥମେ ଏକ ହଟଚମଟ ସୃଷ୍ଟି କରି ଥିଲେ ହେଁ ପରବର୍ତ୍ତୀ ସମୟରେ ଚନ୍ଦ୍ରମଣି ଯେମିତି ପରିବର୍ତ୍ତିତ ହୋଇ କିମ୍ଭୂତକିମାକାର ଭାବରେ ନୂତନ ପ୍ରକ୍ରିୟା ଆରମ୍ଭ କରିଦେଇଛି । ରାୟ ବାହାଦୂର ରଙ୍କନିଧିବାବୁଙ୍କ କନିଷ୍ଠ ପୁତ୍ର ଜ୍ୟୋତି ଶଙ୍କର (ବୁଲୁ)ଙ୍କୁ ପ୍ରଥମେ ଚନ୍ଦ୍ରମଣି ତାର ପରିବର୍ତ୍ତିତ ଭାବଗାମ୍ଭୀର୍ଯ୍ୟ ପ୍ରଦର୍ଶନ କରାଇ ଚକିତ କରାଇଦେଇଛି । ଶେଷରେ ତା' ନିମନ୍ତେ ଚା' ପାନ ଆଣିଦେବାକୁ ଆଦେଶ ଦିଆଯାଇଛି ଏବଂ ସେହି ଆଦେଶରେ ବୁଲୁ ନୀରବରେ ଚା'ଓ ତା'ପରେ ପାଣି ଆଣି ଦେଇଛି । ଇତି ଅବସରରେ ଆସିଛନ୍ତି ରଙ୍କନିଧିବାବୁଙ୍କ ଜ୍ୟେଷ୍ଠପୁତ୍ର ସତ୍ୟଶଙ୍କର । ସତ୍ୟଶଙ୍କର ପ୍ରଥମେ ଚନ୍ଦ୍ରମଣି ଓ ଜ୍ୟୋତିଶଙ୍କରଙ୍କ ପରିବର୍ତ୍ତିତ ଅସ୍ୱାଭାବିକ ରୀତିନୀତି ଦେଖି ବିସ୍ମିତ ହୋଇଛି । ଆଗନ୍ତୁକଟି କିଏ, କିପରି ତାଙ୍କ ଘରକୁ ପ୍ରବେଶ କଲା ଜାଣିବାକୁ ଚେଷ୍ଟାକରି ମଧ୍ୟ ଜାଣିପାରି ନାହିଁ । ଶେଷକୁ ସେମାନଙ୍କ ପରି ନିଜେ ମଧ୍ୟ ପରିବର୍ତ୍ତିତ ହୋଇ ନୀରବିତ ହୋଇଯାଇଛି । ଚନ୍ଦ୍ରମଣିର କୁହୁକ ଆଜ୍ଞାରେ କ୍ରମଶଃ ରଙ୍କନିଧିବାବୁଙ୍କ ଦୁଇପୁତ୍ର ସତ୍ୟଶଙ୍କର ଓ ଜ୍ୟୋତିଶଙ୍କର ସଂଗୀତ ଗାନ କରୁଥିବାବେଳେ ଗୃହକର୍ତ୍ତା – ରାୟବାହାଦୂର ରଙ୍କନିଧିବାବୁ ଆସିଛନ୍ତି ଏବଂ ଏହି ପରିବର୍ତ୍ତିତ ଚରିତ୍ର ଗୁଡ଼ିକୁ ଆବିଷ୍କାର କରି ହତଚକିତ ହୋଇଯାଇଛନ୍ତି । ଆଗନ୍ତୁକଟିର ପରିଚୟ ଜାଣିବାକୁ ଉତ୍କଣ୍ଠିତ ହୋଇଛନ୍ତି । ମାତ୍ର ସବୁ ଯେମିତି ତାଙ୍କୁ ବିସ୍ମୟକର ଏବଂ କିମ୍ଭୂତକିମାକାର ମନେହୋଇଛି । ଶେଷକୁ ରଙ୍କନିଧିବାବୁ ସଭିଙ୍କର ଏସବୁ ଅସ୍ୱାଭାବିକ କ୍ରିୟାକଳାପ ସହ୍ୟ କରି ନ ପାରି ସେମାନଙ୍କୁ ଗୁଳିକରି ମାରିବାକୁ ଆଗଭର ହୋଇଥିଲେ ମଧ୍ୟ ତାଙ୍କର ସବୁ କ୍ରିୟାପ୍ରକ୍ରିୟା ଯେମିତି ଅସମାହିତ ହୋଇ ରହିଯାଇଛି । ସେ କିଛି ଜାଣି ପାରିନାହାନ୍ତି ।

ଏହି ଏକାଙ୍କିକାରେ ନାଟ୍ୟକାର ଏକ ଆଦର୍ଶର ବାର୍ତ୍ତା ପ୍ରଚାର କରିଛନ୍ତି । ଅଭାବୀ ସର୍ବହରାର ମଧ୍ୟ ଏ ସମାଜରେ ସମସ୍ତ ଭୋଗବିଳାସ ତଥା ଐଶ୍ୱର୍ଯ୍ୟ ପ୍ରାଚୁର୍ଯ୍ୟ ମଧ୍ୟରେ ବଂଚିବାର ଅଧିକାର ଅଛି ।

ଏପରି ଏକ କ୍ଷୁଦ୍ର କଥାବସ୍ତୁ ମଧ୍ୟରେ ବିଶ୍ୱଜିତ୍ ଦାସ ଏକ ଛୋଟ ନାଟକଟିଏ ରଚନା କରି ଚରିତ୍ରଗୁଡ଼ିକୁ ଯଥାରୀତିରେ ଚିତ୍ରିତ କରି ଯେପରି ଭାବେ ସଜୀବ ନାଟକୀୟତା ସୃଷ୍ଟି କରିଛନ୍ତି, ତା'ର ତୁଳନା ନାହିଁ ।

# ସୁଟିଂ ଚାଲିଛି

ଏକାଙ୍କିକା ରଚନା କରିବାରେ ପାରଂଗମ - ନାଟ୍ୟକାର ବିଶ୍ୱଜିତ୍ ଦାସ । ଛାତ୍ର ଜୀବନରୁ ସେ କେବଳ ବିଭିନ୍ନ ସ୍କୁଲ୍, କଲେଜ ନିମନ୍ତେ ଏକାଙ୍କିକା ରଚନା କରିନାହାନ୍ତି, ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ ବା ଉତ୍ସବ ନିମନ୍ତେ ମଧ୍ୟ ସେ ବେଶ୍ ପ୍ରଭାବଶାଳୀ ତଥା ଲୋକପ୍ରିୟ ଏକାଙ୍କିକାମାନ ରଚନା କରି ଯଶସ୍ୱୀ ହୋଇପାରିଛନ୍ତି । 'ସୁଟିଂ ଚାଲିଛି' ତାଙ୍କର ସେହିପରି ଏକ ହାସ୍ୟରସାତ୍ମକ ତଥା ପ୍ରଭାବଶାଳୀ ମର୍ଯ୍ୟାଦାପୂର୍ଣ୍ଣ ଏକାଙ୍କିକା । ଏହା ୧୯୮୨ ମସିହାରେ ରାଜ୍ୟ ଚଳଚିତ୍ର ପୁରସ୍କାର ଉତ୍ସବ ଉପଲକ୍ଷେ ସ୍ୱତନ୍ତ୍ର ଭାବେ ରଚିତ ହୋଇଥିଲା ଏବଂ ବିଶିଷ୍ଟ ଚଳଚିତ୍ର ପ୍ରଯୋଜକ ଧୀର ବିଶ୍ୱାଳଙ୍କ ପ୍ରଯୋଜନାରେ ଚଳଚିତ୍ର ନିର୍ଦ୍ଦେଶକ ଗୋବିନ୍ଦ ତେଜଙ୍କ ନିର୍ଦ୍ଦେଶନାରେ ଚଳଚିତ୍ର ପୁରସ୍କାର ଉତ୍ସବରେ ଭୁବନେଶ୍ୱରର ପ୍ରଦର୍ଶନୀ ପଡ଼ିଆରେ ବେଶ୍ ସଫଳତାର ସହ ଅଭିନୀତ ହୋଇଥିଲା । ଓଡ଼ିଶାର ପ୍ରଖ୍ୟାତ ଅଭିନେତା, ଅଭିନେତ୍ରୀ - ଯଥାକ୍ରମେ ଧୀର ବିଶ୍ୱାଳ, ହର ପଟ୍ଟନାୟକ, ନରି, ଜୟୀ, ନଳିନୀକାନ୍ତ. ରାୟ, ଏକାଦଶୀ ପ୍ରସାଦ ବୋଇତାଇ, ବାବାଜି ସାହୁ, ମାମିନା ଓ ଗୀତା ଜୈନ ପ୍ରମୁଖ ଅଭିନୟ କରିଥିଲେ । ଏହି ଲେଖକ ମଧ୍ୟ ସେହି ଏକାଙ୍କିକା ଉପଭୋଗ କରିବାର ସୌଭାଗ୍ୟ ଅର୍ଜନ କରିଥିଲା ।

ସୁଟିଂ ଚାଲିଛି (୨୦୦୩) ଏକାଙ୍କିକାଟିର କଥାବସ୍ତୁ ଅତ୍ୟନ୍ତ ସାଧାରଣ କିନ୍ତୁ ବେଶ୍ ନାଟକୀୟ, ଉତ୍କଣ୍ଠାମୟ ଏବଂ ବିଶେଷ ହାସ୍ୟରସପୂର୍ଣ୍ଣ । ଏକାଙ୍କିକାର ନାମକରଣ 'ସୁଟିଂ ଚାଲିଛି'ରୁ କଥାବସ୍ତୁର ଆବେଗ ଓ ଉତ୍କଣ୍ଠା ସହଜରେ ଦର୍ଶକ/ପାଠକଙ୍କ ମନସରୋବରରେ ଝଲ୍‌ସିଯାଏ । ଏକାଙ୍କିକାର ପ୍ରତିପାଦ୍ୟ କଥାବସ୍ତୁ ହେଲା ଜନୈକ ଗୃହକର୍ତ୍ତା ଔପନ୍ୟାସିକ ଜଗବନ୍ଧୁ ବାବୁଙ୍କ ଘରେ ତାଙ୍କ ରଚିତ ଉପନ୍ୟାସ 'ଗୋଟିଏ ହୃଦୟ ଅନେକ ଯାତନା'କୁ 'ଧପ୍‌ପାବାଜ' ଫିଲ୍ମ ନାମରେ ସୁଟିଂ ଚାଲିଛି । ଧୀରଙ୍କ ପ୍ରଯୋଜନା ଓ ଜନାର୍ଦ୍ଦନଙ୍କ ନିର୍ଦ୍ଦେଶନାରେ ଫିଲ୍ମ ସୁଟିଂ କାର୍ଯ୍ୟ ଚାଲିଥିଲେ ମଧ୍ୟ ସରିନାହିଁ । କ୍ରମଶଃ ଲମ୍ବିଲମ୍ବି ଚାଲିଛି ।

ସାଧାରଣତଃ ଫିଲ୍ମ ସୁଟିଂ ହିଁ ସେହିପରି ଭାବରେ ହୋଇଥାଏ । ସୁଟିଂବେଳେ କେବଳ ସଂଳାପ ଉଚ୍ଚାରଣ ଏବଂ ଅଭିନୟର ସଫଳ ପରିପାଟୀ ସହିତ ସମସ୍ତ ସାର୍ଥକତାକୁ ନିର୍ଦ୍ଦେଶକଙ୍କୁ ଲକ୍ଷ୍ୟ ଦେବାକୁ ପଡ଼ିଥାଏ । ଏହା ବ୍ୟତୀତ ସୁଟିଂ ସମୟରେ ଅନ୍ୟାନ୍ୟ ସୁବିଧା ଅସୁବିଧାର ସମସ୍ୟାକୁ ମଧ୍ୟ ସାମ୍ନା କରିବାକୁ ପଡ଼ିଥାଏ । ପ୍ରଯୋଜକ ଓ ନିର୍ଦ୍ଦେଶକଙ୍କୁ ସେହିପରି ଯାହାକିଛି ସମସ୍ୟା ଉପୁଜିଛି ତାକୁ ପ୍ରଯୋଜକ ସମାଧାନ ପାଇଁ ତତ୍‌ପର ଥିବାବେଳେ ସୁଟିଂବେଳେ ସଫଳ ଅଭିନୟ ନିମନ୍ତେ ନିର୍ଦ୍ଦେଶକ ଜନାର୍ଦ୍ଦନ ସଜାଗ ରହିଛନ୍ତି । କିନ୍ତୁ ସୁଟିଂ ସରୁନାହିଁ, ନିର୍ଦ୍ଧାରିତ

ସମୟଠାରୁ ଅନେକ ଲମ୍ବିଲମ୍ବି ଯାଉଛି । ଗୃହକର୍ତ୍ତୀ ଜଗବନ୍ଧୁବାବୁ ନିଜ ଘରକୁ ସୁଟିଂ ପାଇଁ ଛାଡ଼ିଦେଇ ନିଜର ପତ୍ନୀ ପିଲାଙ୍କୁ ବାରଣ୍ଡାରେ ରଖାଇଛନ୍ତି । ତେଣୁ ତାଙ୍କ ପରିବାରରେ ନାନାଦି ଅସୁବିଧା ଉପୁଜିଛି । ସେ ସଂକଟକୁ ଆଉ ସହ୍ୟ କରିପାରିନାହାନ୍ତି ଗୃହକର୍ତ୍ତୀ । ସେ ସ୍ୱାମୀଙ୍କ ଉପରେ ଏହାକୁ ବନ୍ଦ କରିବାକୁ ଚାପ ଦେବା ପରେ ବି ସୁଟିଂ ବନ୍ଦ ହୋଇନାହିଁ । ସୁଟିଂ ଚାଲିଛି, ସରୁନାହିଁ । ଜଗବନ୍ଧୁ ବାବୁ ମଧ୍ୟ ଉପାୟହୀନ ଭାବେ ବାଧ୍ୟ ହୋଇ ନୀରବ ରହିଛନ୍ତି । ଦୁଇଦିନ ଅତିକ୍ରମ କରିବାପରେ ସୁଟିଂ ଶେଷ ନ ହେବାରୁ ଗୃହକର୍ତ୍ତୀ – ସୁଶୀଳା ଆସି ପ୍ରଥମେ ତୁମ୍ବୀତୋଫାନ୍ କରି ଶୀଘ୍ର ସୁଟିଂଶେଷ ନ କଲେ ଅବସ୍ଥା ଗୁରୁତର ଧାରଣ କରିବାର ଚେତାବନୀ ଦେଇଯାଇଛନ୍ତି । କିନ୍ତୁ ନିର୍ଦ୍ଦେଶକ ତା'ପରେ ଫାଇଟିଙ୍ଗ୍ ଦୃଶ୍ୟ ଆରମ୍ଭ କରିଥିଲେ ମଧ୍ୟ ତାହା ଶେଷ ନ ହୋଇ ଲମ୍ବିଲମ୍ବି ଚାଲିଛି । ମୁଖ୍ୟନାୟକ ଓ ଖଳନାୟକ ମଧ୍ୟରେ ଚାଲିଥିବା ମୁଷ୍ଟିଯୁଦ୍ଧର ଅବସାନ ନ ଘଟି ତାହା ପ୍ରକୃତ ଫାଇଟିଙ୍ଗ ବା ଯୁଦ୍ଧରେ ପରିଣତ ହୋଇଛି । ଏହି ସଂଘର୍ଷକୁ ଏଡ଼ାଇବାକୁ ଉଭୟ ପ୍ରଯୋଜକ ଓ ନିର୍ଦ୍ଦେଶକ ନିଷ୍ଠାର ସହ ଚେଷ୍ଟା କରୁଥିବା ବେଳେ ଗୃହକର୍ତ୍ତୀ – ସୁଶୀଳା ରଣଚଣ୍ଡୀ ମୂର୍ତ୍ତିଧରି ଅଣ୍ଟାରେ ଲୁଗାଭିଡ଼ି ନିର୍ଦ୍ଦେଶକ ଜନାର୍ଦ୍ଦନଙ୍କ ପାଖକୁ ଆଗେଇ ଆସି ଚିତ୍କାର କରିଛନ୍ତି । ଖାଲି ଚିତ୍କାର ନୁହେଁ - ପନିକିରେ ଫାଇଟିଙ୍ଗ୍‌ର ପୂର୍ଣ୍ଣଚ୍ଛେଦ ପକାଇବାକୁ ଘୋଷଣା କରନ୍ତେ ସମସ୍ତେ ଭୟଭୀତ ହୋଇ ସୁଟିଂ ସରଂଜାମ ପ୍ୟାକ୍‌ଅପ୍ କରି ଚାଲିଯାଇଛନ୍ତି ।

ଏହିପରି ଏକ ସଂକ୍ଷିପ୍ତ ହାସ୍ୟରସାତ୍ମକ କଥାବସ୍ତୁକୁ ନେଇ ନାଟ୍ୟକାର ବିଶ୍ୱଜିତ୍ ଦାସ 'ସୁଟିଂ ଚାଲିଛି' ଏକାଙ୍କିକାଟିକୁ ରଚନା କରି ସଫଳ ହୋଇଛନ୍ତି ।

ଏକାଙ୍କିକା 'ସୁଟିଂ ଚାଲିଛି'ର ସଂଳାପ ଯେପରି ଆବେଗପୂର୍ଣ୍ଣ ଓ ପାତ୍ରାଭିମୁଖୀ, ଏହାର ସଂଘାତ ସେହିପରି ଉତ୍କଣ୍ଠାପୂର୍ଣ୍ଣ । 'ସୁଟିଂ ଚାଲିଛି'ର କେତୋଟି ସଂଳାପ ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖ କରାଯାଇପାରେ ।

ସୁଶୀଳା – କ'ଣ ଚାଲିଛି ଏଠି ?

ଜନାର୍ଦ୍ଦନ - ସୁଟିଂ, ଦେଖିପାରୁ ନାହାନ୍ତି ?

ସୁଶୀଳା – ହେଟା ତ ଦି'ଦିନ ହେଲା ଦେଖୁଛି । ଆଉ କେତେ ଦେଖିବି ?

ଜନାର୍ଦ୍ଦନ - ନା, ମାନେ, ଏଇ ଫାଇଟିଙ୍ଗ୍ ସିନ୍‌ଟା ଶେଷ ହେଲାମାତ୍ରେ...

ସୁଶୀଳା - ଫାଇଟିଙ୍ଗ୍ ସିନ୍ ? ଆସ ଏଇ ଫାଙ୍କେ ସାଙ୍ଗେ ଶେଷ କରିଦେଉଛି । କିଏ ବାହାରିବ, ବାହାର ।

ଜନାର୍ଦ୍ଦନ - ମାନେ ସୁଟିଂଟା ଶେଷ ହେବା ଆଗରୁ...

ସୁଶୀଳା – ସୁଟିଂ ତମେ କର, ମୁଁ ଫାଇଟିଙ୍ଗ୍ କରୁଛି । କୁନୁ, ଟୁନା, ମୁନୁ, ଟାନା,

କୁଲୁ ମୀନା ଆରେ ଆଣିଲରେ ମୋ ପନିକିଟା ।

ଜନାର୍ଦ୍ଦନ - ପନିକି ? ପନିକ କ'ଣ ହେବ ଆଜ୍ଞା ?

ଧୀର - ପନିକି କ'ଣ ହେବ ?

ସୁଶୀଳା - ପନିକି ନ ହେଲେ ଫାଇଟିଙ୍ଗ୍ ସିନ୍ ଶେଷହେବ କେମିତି ? ମୋ ଘର ଭିତରେ ଶାନ୍ତି ଆସିବ କେମିତି ? ମୋ ପିଲାଙ୍କ ମୁହଁରେ ହସ ଫୁଟିବ କେମିତି ? 'ଧପ୍‌ପାବାଜ୍' ଫିଲ୍ମର ଲେଖକ ଭାବରେ ମୋ ସ୍ୱାମୀଙ୍କର କଳଙ୍କ ଲିଭିବ କେମିତି ?

ସମସ୍ତେ – ଜଗବନ୍ଧୁ ବାବୁ! ଜଗବନ୍ଧୁ ବାବୁ!!

(ସୁଶୀଳାଙ୍କ ତର୍ଜନ ଗର୍ଜନରେ ଉଚ୍ଚକୀତ ହୋଇ ଦୌଡ଼ି ଦୌଡ଼ି ଆସିଛନ୍ତି ଜଗବନ୍ଧୁ ବାବୁ । ଜଗବନ୍ଧୁବାବୁଙ୍କୁ ଦେଖିବା ମାତ୍ରେ ସମସ୍ତେ ଆତଙ୍କିତ ଭାବରେ ତାଙ୍କୁ ଘେରି ଯାଇଛନ୍ତି ।)

ସମସ୍ତେ – ଜଗବନ୍ଧୁବାବୁ! ପନିକି...

ଜଗବନ୍ଧୁ - ପନିକି ? ଓହୋ ବୁଝିଲି, ଦେଖନ୍ତୁ, ସୁଶୀଳା ମୋର ଧର୍ମପତ୍ନୀ । ତାଙ୍କୁ ମୁଁ ଭଲ ଭାବରେ ଚିହ୍ନେ । ସିଏ ଯାହା କହନ୍ତି, ସେଇୟା କରନ୍ତି । ପନିକିଟା ବୋଧହୁଏ ଏଇ ସଙ୍ଗେସଙ୍ଗେ ପହଞ୍ଚିଯିବ । ଆଉ ତା'ପରେ କ'ଣ ହବ କିଛି କହିହେବ ନାହିଁ ।

ଜନାର୍ଦ୍ଦନ - ଅନେଇଛନ୍ତି କ'ଣ ଧୀରବାବୁ, ପ୍ୟାକ୍‌ଅପ୍ । ଗାଡ଼ିରେ ଲୋଡ୍ କରିବାକୁ କୁହନ୍ତୁ । ମୁଁ ଆଗରୁ ଯାଇ ରିକ୍ସା ଧରୁଛି ।

(ସୁଟିଂ ଚାଲିଛି ଓ ଅନ୍ୟାନ୍ୟ ନାଟିକା – ଚିତ୍ରକଳା ପ୍ରକାଶନୀ, ଭୁବନେଶ୍ୱର ପୃ. ୨୩)

ସଂପୂର୍ଣ୍ଣ ନାଟକ ରଚନାଠାରୁ ଏକାଙ୍କିକା ରଚନା ନିଶ୍ଚିତଭାବେ କଷ୍ଟ ସାପେକ୍ଷ । କିନ୍ତୁ ନାଟ୍ୟକାର ବିଶ୍ୱଜିତ୍ ସେ କଳାରେ ବିଶେଷ ପାରଙ୍ଗମ । 'ସୁଟିଂ ଚାଲିଛି' ପରି ତାଙ୍କର ବହୁ ଏକାଙ୍କିକା ବା ନାଟିକା ଅନେକ ସଫଳତା ଲାଭ କରିପାରିଛି ।

## କୀଟ

'କୀଟ'(୨୦୦୦) ବିଶ୍ୱଜିତ୍ ଦାସଙ୍କର ଅନ୍ୟ ଏକ ପ୍ରଭାବଶାଳୀ ଏକାଙ୍କିକା । ଏକ ସରକାରୀ ଅଫିସ୍‌ର ଚଳନ୍ତି ଘଟଣା ପ୍ରବାହକୁ ନେଇ ଏକାଙ୍କିକାଟି ରଚିତ । ସେହି ସରକାରୀ ଅଫିସ୍‌ରେ ମଧ୍ୟବୟସ୍କ ସାଧୁଚରଣ ଅଫିସ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଥିବାବେଳେ ଗୋବିନ୍ଦ ଜଣେ ପ୍ରୌଢ଼ ମୁଖ୍ୟ କିରାଣିଭାବେ ଅବତୀର୍ଣ୍ଣ ହୋଇଛନ୍ତି । ଶରତ ଓ ଜୟନ୍ତ ଅଫିସ୍‌ର ଦୁଇଜଣ ଯୁବକ କର୍ମଚାରୀ ଥିବାବେଳେ ଗୋପୀ ଅଫିସ୍‌ର ପିଅନ ଏବଂ ରାଜେନ୍ଦ୍ର ଅଫିସ୍‌ର ନବନିଯୁକ୍ତ

ଡାଇରେକ୍ଟର ଭାବେ ପ୍ରତିଭାତ ହୁଅନ୍ତି । ଏକାଙ୍କିକାର ସଂକ୍ଷିପ୍ତ କଥାବସ୍ତୁ ହେଲା ଅଫିସ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ସାଧୁଚରଣଙ୍କ ନିର୍ଦ୍ଦେଶରେ ଅଫିସ୍‌ର ପ୍ରତିଟି କାର୍ଯ୍ୟ ଚଳେ । ଅଫିସ୍‌କୁ ନବନିଯୁକ୍ତି ପାଇ ଆସୁଥିବା ଡାଇରେକ୍ଟରଙ୍କ ନିମନ୍ତେ ସୁପରିଟେଣ୍ଡେଣ୍ଟ୍ ନୂତନ ଗୃହର ସଜ୍ଜୀକରଣ ନିମନ୍ତେ ସକ୍ରୀୟ ହୋଇପଡ଼ିଛନ୍ତି ଏବଂ ସେଥିନିମନ୍ତେ ସେ ନୂଆ ସୋଫା, ଟେବୁଲ ଆଦି ବ୍ୟବସ୍ଥା କରିଛନ୍ତି । କିନ୍ତୁ ନୂଆ ଡାଇରେକ୍ଟର ରାଜେନ୍ଦ୍ର ବାବୁ ଛଦ୍ମ ଭାବରେ ଏକ କଣ୍ଟ୍ରାକ୍ଟରର ପରିଚୟ ଦେଇ ଆସି ସୁପରିନ୍‌ଟେଣ୍ଡେଣ୍ଟ୍ ସାଧୁଚରଣଙ୍କ ସମ୍ମୁଖୀନ ହୋଇଅଛନ୍ତି । ଏହି ଛଦ୍ମରୂପରେ ରାଜେନ୍ଦ୍ର ଅଫିସ୍‌ର ଏବଂ ଅଫିସ ସୁପରିଟେଣ୍ଡେଣ୍ଟ୍ ଆଦିଙ୍କର ପ୍ରତିଟି ଅନୈତିକ କାର୍ଯ୍ୟକଳାପର ପରିଚୟ ପାଇଛନ୍ତି । ଅଫିସ୍‌କୁ ଅନ୍ଧାରଭିତରେ ରଖି କରିଯାଉଥିବା ଅନୈତିକ କାର୍ଯ୍ୟଠାରୁ ଦୂରରେ ରହିବାକୁ ଡାଇରେକ୍ଟର ସକ୍ରୀୟ ଭାବରେ କହି ଉଠିଛନ୍ତି – 'ଘରର ଝରକା ଗୁଡ଼ାକ ସବୁ ଖୋଲିଦିଅ, ଗୋପୀ- ବର୍ଷା ଛାଡ଼ିଗଲାଣି, ଘର ଭିତରକୁ ଟିକିଏ ଆଲୁଅ ଆସୁ, ଟିକିଏ ପବନ ଆସୁ । ଏଇ ଅନ୍ଧାରିଆ ଘର ଭିତରେ ରହି ରହି ମଣିଷର ନିଶ୍ୱାସ ପ୍ରଶ୍ୱାସ ବନ୍ଦ ହୋଇଆସିଲାଣି ।

ଏହାହିଁ 'କୀଟ' ଏକାଙ୍କିକାର ମୁଖ୍ୟ କଥାବସ୍ତୁ ।

ଏକାଙ୍କିକାର କଥାବସ୍ତୁ ଅତ୍ୟନ୍ତ ସଂକ୍ଷିପ୍ତ ଥିବାବେଳେ ଚରିତ୍ରମାନଙ୍କୁ ବିଶେଷ ଚିତ୍ରଣ କରିବାର ଅବକାଶ ନାଟ୍ୟକାରଙ୍କୁ ମିଳିନଥାଏ । ତେଣୁ ନାଟ୍ୟକାର ବିଶ୍ୱଜିତ୍ ଏହି ଏକାଙ୍କିକାଟିକୁ ଯଥାରୀତିରେ ରଚନା କରିବା ସହିତ ଚରିତ୍ର ଗୁଡ଼ିକୁ ଯେପରି ଚିତ୍ରଣ କରିବାକଥା ତାହା କରିଅଛନ୍ତି । ସାଂପ୍ରତିକ ସମାଜରେ ସରକାରୀ ଅଫିସ୍ ମାନଙ୍କରେ ଘଟୁଥିବାର ଚିତ୍ର ବେଶ୍ ନିଚ୍ଛକ ଭାବେ ଅଙ୍କନ କରିବାରେ ସମର୍ଥ ହୋଇ ପାରିଛନ୍ତି । 'କୀଟ' ଏକାଙ୍କିକାର ଯଥାର୍ଥ ନାଟକୀୟତା ସୃଷ୍ଟି ହୋଇଥିବା ବେଳେ ତାହାର ସଂଳାପ ଗୁଡ଼ିକ ବେଶ୍ ଚିତ୍ତସ୍ପର୍ଶୀ ହୋଇପାରିଛି । ସଂଯୋଜିତ ସଂଳାପର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦିଆଯାଇପାରେ । ଯଥା :-

ସାଧୁ - ଓହୋ, ଯାହା ସେ ଚାହିଁବେ ଆଖିବୁଜି ଦେଇଦେବେ । କିନ୍ତୁ ଖବରଦାର ! ଭୁଲ୍‌ରେ ବି ଯେମିତି ଡେଲିଭରି ନ ନିଅନ୍ତି । ଅଫିସ୍ କାମ କରି କରି ମୁଣ୍ଡଟା କ'ଣ ହୋଇଯାଇଛି, କାହାକୁ ଯେ କ'ଣ କେତେବେଳେ କହିଦଉଛି ++ ଆପଣ କିଛି ଭାବିବେ ନାହିଁ ।

ଡାଇରେକ୍ଟର – କିନ୍ତୁ ମୁଁ ତ ମରାମତି ବିଷୟ ବୁଝିବାକୁ ଏଠିକି

ସାଧୁ - ମୁଁ ବୁଝୁଛି ଆଜ୍ଞା ! ଆପଣତ ନିଜେ ଆସି ନାହାନ୍ତି, ସେମାନେ ପଠେଇଛନ୍ତି ଆପଣଙ୍କୁ । ସେଇ ଏକାକଥା ହେଲାନାହିଁ ? ଦେଖନ୍ତୁ କାମଟା ଯଦିଓ ଖୁବ୍ ବଡ଼ ନୁହେଁ, ତଥାପି

ବେଶ୍ କିଛିଟା ମାର୍ଜିନ୍ ଆପଣ ପାଇବେ ।

ଡାଇରେକ୍ଟର – କିନ୍ତୁ ମୁଁ ...

ସାଧୁ – (ବାଧାଦେଇ, ତରତର ହୋଇ)

ମୁଁ ସବୁ ବୁଝିପାରୁଛି ଆଜ୍ଞା ! ସବୁ । ଆଗରୁ ବି ଏମିତି ଅନେକଥର କରିଛିନା ! ହଁ ଆପଣ କୁହନ୍ତୁ, ଆପଣ ଯାହା କହିବେ, ଆମେ ସେଇଆ ଦବୁଁ ।

(ଏକାଙ୍କିକା ଗୁଚ୍ଛ, ସାଥି ପ୍ରକାଶନ, କଟକ-୨, ୨୦୦୦, ପୃ.୮୧)

ସବୁ ଦୃଷ୍ଟିରୁ 'କୀଟ'ଯେ ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ଏକ ସଫଳ ସୃଷ୍ଟି ଏଥିରେ ସନ୍ଦେହ ନାହିଁ ।

## ଶ୍ରେଷ୍ଠାଂଶେ ନଟବର

'ଶ୍ରେଷ୍ଠାଂଶେ ନଟବର' ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କର ଅନ୍ୟ ଏକ ହାସ୍ୟରସାତ୍ମକ ନାଟିକା ଯାହାକି ବେଶ୍ ମଂଚ ସଫଳତା ଲାଭ କରିଥିଲା । ରାଜ୍ୟ ଚଳଚିତ୍ର ଉତ୍ସବ ଉପଲକ୍ଷେ ଏହା ସ୍ୱତନ୍ତ୍ରଭାବେ ରଚିତ ହୋଇଥିଲା ଏବଂ ଚଳଚିତ୍ର ନିର୍ଦ୍ଦେଶକ ଗୋବିନ୍ଦ ତେଜଙ୍କ ଦ୍ୱାରା ପ୍ରଥମେ ନିର୍ଦ୍ଦେଶିତ ହୋଇଥିଲା । ଏଥିରେ ଚଳଚିତ୍ର ଅଭିନେତା ଅଭିନେତ୍ରୀ ସର୍ବଶ୍ରୀ ଉତ୍ତମ ମହାନ୍ତି, ଗ୍ଲୋରିଆ ମହାନ୍ତି, ବିଜୟ ମହାନ୍ତି, ଧୀର ବିଶ୍ୱାଳ, ୰ ନେତ୍ରାନନ୍ଦ ମିଶ୍ର, ୰ ରାଧା ପଣ୍ଡା ଓ ୰ ମାମିନା ଆଦି ଅଭିନୟ କରିଥିଲେ ।

ଆଲୋଚ୍ୟ ଏକାଙ୍କିକା 'ଶ୍ରେଷ୍ଠାଂଶେ ନଟବର' (୨୦୦୩)ର କଥାବସ୍ତୁ ଯେପରି ହାସ୍ୟୋଦ୍ଦୀପକ ତା'ର ସଂଳାପ ସଂଯୋଜନା ସେହିପରି ପାତ୍ରାଭିମୁଖୀ ଏବଂ ଆବେଗପୂର୍ଣ୍ଣ । ଆରମ୍ଭରୁ ଶେଷଯାଏ ଉତ୍କଣ୍ଠା ରକ୍ଷା କରାଯିବା ସଙ୍ଗେ ସଙ୍ଗେ ହାସ୍ୟରସର ଧାରା ନିର୍ଗତ ହୋଇଅଛି । ନାଟକର କଥାବସ୍ତୁ ସଂକ୍ଷିପ୍ତ ହେଲେବି ବେଶ୍ ମନୋରଂଜନଧର୍ମୀ ଏବଂ ଚିତ୍ତସ୍ପର୍ଶୀ । ଅବସରପ୍ରାପ୍ତ ନଟବରଙ୍କ ପୁତ୍ର ବାବୁଲା ଏମ୍.ଏ.ପାସ୍ କରିବାପରେ କୌଣସି ଚାକିରି ପଛରେ ନ ଗୋଡ଼ାଇ ଚଳଚିତ୍ର ନିର୍ମାଣ କରିବାର ସ୍ୱପ୍ନରେ ବିଭୋର ହୋଇପଡ଼ିଛି । କିନ୍ତୁ ଚଳଚିତ୍ର ନିର୍ମାଣ ନିମନ୍ତେ ଯେଉଁ ବିପୁଳ ଅର୍ଥର ଆବଶ୍ୟକତା, ତାହା ବାବୁଲା ପାଖରେ ପାଇବା ଅସମ୍ଭବ ହେଲେ ମଧ୍ୟ ନିଜର ମାଆଙ୍କ ମାଧ୍ୟମରେ ବାପାଙ୍କ ପାଖରୁ ନେବାକୁ ଯୋଜନା ପ୍ରସ୍ତୁତ କରିଛି ସେ । ସେଥି ନିମନ୍ତେ ତାର ଦୁଇ ବଂଧୁ ଯେଉଁମାନେ ଚଳଚିତ୍ରର ନିର୍ଦ୍ଦେଶକ ଓ ସଂଗୀତ ନିର୍ଦ୍ଦେଶକ ସେମାନେ ଆସିଛନ୍ତି ବାବୁଲାର ବାପା ନଟବରଙ୍କୁ ବୁଝାଇ ପ୍ରରୋଚିତ କରିବାକୁ । ଏତଦ୍‌ବ୍ୟତୀତ ଏହି ଚଳଚିତ୍ରରେ ମୁଖ୍ୟ ନାୟିକା ଭୂମିକାରେ ନଟବରଙ୍କ ଅନ୍ୟତମ

ପୂର୍ବତନ ସହକର୍ମୀ ଧର୍ମାନନ୍ଦଙ୍କ କନ୍ୟା ଲବଙ୍ଗଲତିକାକୁ ଶିଖେଇ ବୁଝେଇ ଆଣିଛନ୍ତି । ନଟବର ଏହି ଫିଲ୍ମର ନିର୍ମାତା ବୋଲି ଜାଣି ନିଜ କନ୍ୟାକୁ ଚଳଚ୍ଚିତ୍ରରେ ଅଭିନୟ କରିବାକୁ ସମ୍ମତି ପ୍ରଦାନ କରି ନିଜେ କନ୍ୟାକୁ ସଙ୍ଗରେ ନେଇ ନଟବରଙ୍କ ଘରକୁ ଆସିଛନ୍ତି । କିନ୍ତୁ ଆସି ବାବୁଲା, ମାର୍କଣ୍ଡ ଓ ଗନ୍ଧର୍ବଙ୍କୁ ଭେଟିବା ପରେ ସେ କିଂଚିତ୍ ଆଶଙ୍କିତ ହୋଇ ପଡ଼ିଛନ୍ତି । ତାଙ୍କୁ ମଧ୍ୟ ଏମାନେ ଚଳଚିତ୍ରରେ ତାଙ୍କ କନ୍ୟା ମୁଖ୍ୟ ନାୟିକା ଭୂମିକାରେ ଅଭିନୟ କଲେ ଅଜସ୍ର ଟଙ୍କା ଉପାର୍ଜନ କରିବାର ଲୋଭ ଦେଖାଇଛନ୍ତି ।

ଧର୍ମାନନ୍ଦ ଏସବୁ ଜାଣି ଆଶଙ୍କିତ ଥିବାବେଳେ ନଟବରଙ୍କ ସହିତ ସାକ୍ଷାତ ହୋଇଛି ଏବଂ ନଟବର ଯେ ଚଳଚିତ୍ରର ପ୍ରକୃତ ପ୍ରଯୋଜକ ନୁହନ୍ତି – ତାହାର ସୂଚନା ମଧ୍ୟ ପାଇଛନ୍ତି । ଏଠାରେ ନାଟ୍ୟକାର ପ୍ରସଙ୍ଗଟିକୁ ଟିକିଏ ଘୂରେଇ ଦେଇ ହାସ୍ୟରସର ଧାରାକୁ ପ୍ରଲମ୍ବିତ କରି ଦେଇଛନ୍ତି । ନଟବର ତାଙ୍କ ନିଜ ସ୍ତ୍ରୀ ନର୍ମଦାକୁ ମୁଖ୍ୟ ନାୟିକା କରି ନିଜେ ମୁଖ୍ୟ ନାୟକ ଭୂମିକାରେ ଏବଂ ଧର୍ମାନନ୍ଦଙ୍କୁ ଖଳନାୟକ ଭୂମିକାରେ ଅବତୀର୍ଣ୍ଣ କରାଇବାରେ ପରିକଳ୍ପନା କରନ୍ତେ - ପ୍ରକୃତ ନିର୍ଦ୍ଦେଶକ ଓ ସଂଗୀତ ନିର୍ଦ୍ଦେଶକ ସାଜିଥିବା ମାର୍କଣ୍ଡ ଓ ଗନ୍ଧର୍ବ ସ୍ଥାନ ପରିତ୍ୟାଗ କରି ଏଥିରୁ କ୍ଷାନ୍ତ ହେବାକୁ ବାଧ ହୋଇଛନ୍ତି ।

ରାଜ୍ୟ ଚଳଚିତ୍ର ଉତ୍ସବରେ ଅଭିନୀତ ହେବା ନିମନ୍ତେ ବୋଧହୁଏ କୁଶଳୀ ନାଟ୍ୟକାର ବିଶ୍ୱଜିତ୍ ଚଳଚିତ୍ର ପ୍ରଯୋଜନା ଓ ଅଭିନୟ ସଂପର୍କିତ ବିଷୟବସ୍ତୁକୁ ଉପଜୀବ୍ୟ କରି ଏପରି ଏକ ହାସ୍ୟରସପୂର୍ଣ୍ଣ ନାଟକ ରଚନା କରି ଲୋକପ୍ରିୟତା ଅର୍ଜନ କରିବା ସଙ୍ଗେସଙ୍ଗେ ଓଡ଼ିଆ ଏକାଙ୍କିକା ଭଣ୍ଡାରକୁ ସମୃଦ୍ଧ କରିପାରିଛନ୍ତି ।

## ଚୋର

ବିଶ୍ୱଜିତ୍ ଦାସଙ୍କର 'ଚୋର' ଏକ କ୍ଷୁଦ୍ର ଏକାଙ୍କିକା । ଏହି ଛୋଟ ଏକାଙ୍କିକା ମାଧମରେ ନାଟ୍ୟକାର ବିଶ୍ୱଜିତ୍ ସାମ୍ପ୍ରତିକ ସମାଜରେ କର୍ମଜୀବୀ ଅଧିକାରୀ, ବିଶେଷ କରି ଇଞ୍ଜିନିୟରଙ୍କ ଅନ୍ୟାୟ ଅର୍ଜିତ ଅର୍ଥ ଓ ଧନ ସମ୍ପଦ ସମ୍ପର୍କରେ ସ୍ୱର ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ବେକାର ଶିକ୍ଷିତମାନେ ନିଯୁକ୍ତି ନପାଇ କିପରି ଚୋରି ଡକାୟତି ପରି ନୀଚ କର୍ମକୁ ଆଦରି ନେଉଛନ୍ତି ତାହାର ଏକ ନିଛକ ଚିତ୍ର ଅଙ୍କନ କରିଛନ୍ତି ।

ଏକାଙ୍କିକାର କଥାବସ୍ତୁ ଅତ୍ୟନ୍ତ ସଂକ୍ଷିପ୍ତ । କିନ୍ତୁ ତାହାର ଭାବାବେଗ ବେଶ୍ ତୀକ୍ଷ୍ଣ । ସଂଳାପ ପାତ୍ରାଭିମୁଖୀ ଓ ଶାଣିତ । ସଂଘାତ ଓ ନାଟକୀୟତା ଯଥାର୍ଥ । ମାତ୍ର ତିନୋଟି ଚରିତ୍ରକୁ ନେଇ ଏକାଙ୍କିକାର ପରିକଳ୍ପନା । ସେ ତିନୋଟି ଚରିତ୍ର ହେଲେ, ରତ୍ନାକର ସାମନ୍ତରାୟ

ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିୟର। ସସ୍ମିତା-ରତ୍ନାକର ସାମନ୍ତରାୟଙ୍କ ସହଧର୍ମିଣୀ ଏବଂ ଆଗନ୍ତୁକ-ଜଣେ ବେକାରୀ ଶିକ୍ଷିତ ଚାକିରି ନପାଇ ଚୋରୀ ବୃତ୍ତିକୁ ଆପଣେଇ ନେଇଥିବା ଚୋର। ବିଶ୍ୱଜିତ୍ ଦାସଙ୍କ 'ଚୋର' ଏକାଙ୍କିକାରେ ସମାଜରେ ମଣିଷ କିପରି କଳାଧନ ଠୁଳେଇ ନିଜକୁ ସମାଜରେ ସମାଜପତି ଭାବରେ ଅବତୀର୍ଣ୍ଣ ହୋଇ ନିଜର ଦୁର୍ନୀତିକୁ ତାଙ୍କ ସାଧୁତାର ମୁଖା ପିନ୍ଧି ବଡ଼ ବୋଲାଉଛନ୍ତି ଚିତ୍ରିତ ହୋଇଛି।

ଏକାଙ୍କିକାର ସଂକ୍ଷିପ୍ତ କଥାବସ୍ତୁ ହେଲା ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିୟର ରତ୍ନାକର ସାମନ୍ତରାୟ ଜଣେ ଜୁନିଅର ଇଞ୍ଜିନିୟର ଭାବେ ଚାକିରି ଆରମ୍ଭ କରି ପରବର୍ତ୍ତୀ ସମୟରେ ପଦୋନ୍ନତି ପାଇ ଚିଫ୍ ଇଞ୍ଜିନିୟର ପଦବୀରୁ ଅବସର ନେଇଛନ୍ତି। ତାଙ୍କର ଚାକିରିକାଳର ସମୁଦାୟ ଦରମା ୩୫ ଲକ୍ଷ ହୋଇଥିବାବେଳେ ସେ କୋଟି କୋଟି ଟଙ୍କାର ମାଲିକ ହୋଇଛନ୍ତି। ସ୍ତ୍ରୀ, ପୁଅ, ଝିଅ ଆଦିଙ୍କ ନାମରେ ଚାରିଟି କୋଠା, କୋଟି କୋଟି ଟଙ୍କାର ବ୍ୟାଙ୍କ୍ ବାଲାନ୍ସ, ଘରେ ଅଶୀ ହଜାର ଟଙ୍କା ନଗଦ କ୍ୟାସ୍ ଆଦି ରଖି ପାରିଛନ୍ତି। ପୁଅ ଝିଅଙ୍କୁ ଉଚ୍ଚଶିକ୍ଷା ଦେଇ ଚାକିରି କରାଇବା ସହ ବେଶ୍ ଜାକଜମକରେ ବିବାହ କରାଇଛନ୍ତି। ପିଲାବେଳରୁ ବହୁ ଅଭାବରେ ପାଠପଢ଼ି ଧୀରେ ଧୀରେ ଏତେ ସମ୍ପତ୍ତିର ଅଧିକାରୀ ହୋଇ ପାରିଛନ୍ତି ରତ୍ନାକର ସାମନ୍ତରାୟ। ରତ୍ନାକରଙ୍କ ବିଷୟରେ ଏତେସବୁ ଖବର ସଂଗ୍ରହ କରି ଶିକ୍ଷିତ ଚୋର ଜଣକ ଇଞ୍ଜିନିୟର ସାମନ୍ତରାୟ ଓ ତାଙ୍କ ପତ୍ନୀ ଏକ ବଡ଼ ହୋଟେଲରେ ହେଉଥିବା ତାଙ୍କର ବିବାହ ବାର୍ଷିକୀ ଶେଷ କରି ବିଳମ୍ବିତ ରାତ୍ରିରେ ଗୃହକୁ ଫେରି ଦେଖନ୍ତି ତ ତାଙ୍କ ଘରେ ପଛପଟେ ଶିକ୍ଷିତ ଚୋର ଜଣକ ପ୍ରବେଶ କରି ତାଙ୍କର ଅଶୀ ହଜାର ନଗଦ ଟଙ୍କା, ୩୦ ଭରି ଓଜନର ସୁନାହାର, ୫୦ ଭରି ଓଜନର ବଳା, ହାର, ମୁଦି, ଚୁଡ଼ି ଓ ଦେଢ଼ କିଲୋ ଓଜନର ସୁନା ବିସ୍କୁଟ୍ ଆଦି ଦୁଇଟା ସୁଟ୍‌କେଶ୍‌ରେ ଭର୍ତ୍ତି କରି ରଖିଛନ୍ତି। ରତ୍ନାକର ସାମନ୍ତରାୟ ଓ ତାଙ୍କ ସ୍ତ୍ରୀ ଫେରିବା ପରେ ଘର ଅନ୍ଧାର ଦେଖି ପ୍ରଥମେ ବିସ୍ମିତ ହୋଇଛନ୍ତି। କିନ୍ତୁ ଦ୍ୱାର ଖୋଲି ଭିତରେ ଅଣ୍ଡାଳି ଅଣ୍ଡାଳି ଯାଇ ଲାଇଟ୍ ଜଳାଇ ଦେଖନ୍ତି - ଜଣେ କଳା ପରିଚ୍ଛଦ ପରିହିତ ବ୍ୟକ୍ତି ଓ ତା ପାଖରେ ଏକ ରିଭଲଭର୍। ଏହା ଦେଖି ଆତଙ୍କିତ ହୋଇଯାଇଛନ୍ତି। ପରେ ଜାଣିଛନ୍ତି ଯେ ସେ ଚୋର ଫୋନ୍‌ଲାଇନ୍ କାଟି ଦେଇଛି। ତେଣୁ ପୋଲିସ୍‌କୁ ଜଣାଇବାର ସବୁବାଟ ବନ୍ଦ କରି ଦେଇଛି। ରତ୍ନାକର ଓ ତାଙ୍କ ପତ୍ନୀ ସସ୍ମିତା ଏ ଦୃଶ୍ୟ ଦେଖି ଭୀଷଣ ବ୍ୟଥିତ ଓ ଆତଙ୍କିତ ହେଉଥିବାବେଳେ ସେ ଆଗନ୍ତୁକ ଚୋର ଜଣକ ରତ୍ନାକରଙ୍କ ଲାଞ୍ଚ, ଦୁର୍ନୀତି ଦ୍ୱାରା ବିପୁଳ ଧନ ଅର୍ଜନର ସମସ୍ତ ଗୁମର ଖୋଲି ଦେଇଛନ୍ତି ଏବଂ କିପରି ଏତେ ଧନଠୁଳ କରିଛନ୍ତି ବୋଲି ପ୍ରଶ୍ନ କରିଛନ୍ତି। ସେ ପ୍ରଶ୍ନର ଉତ୍ତର ଦେବା ସମ୍ଭବ ହୋଇ ନାହିଁ ରତ୍ନାକରଙ୍କ ନିକଟରେ। ତା'ପରେ ରତ୍ନାକରଙ୍କ ନିରୁତ୍ତର

ଅବସ୍ଥା ଦେଖି ତାଙ୍କ ଦୁର୍ନୀତି ବିଷୟରେ ତୀବ୍ର ଆକ୍ଷେପ କରି ଦୁଇଟିଯାକ ସୁଟ୍‌କେଶ୍ ଧରି ଆଉ ପଛପଟେ ନ ଯାଇ ମୁଖ୍ୟଦ୍ୱାର ବାଟେ ଅନ୍ତର୍ହିତ ହୋଇଯାଇଛି ।

ଏକାଙ୍କିକାଟି ହାସ୍ୟ ରସାତ୍ମକ ନୁହେଁ - ବରଂ ଉତ୍କଣ୍ଠାପୂର୍ଣ୍ଣ । ଏଥିରେ ଯଥେଷ୍ଟ ନାଟକୀୟତା ସହିତ ସଂଘାତ ଯଥାରୀତିରେ ସଂଯୋଜିତ ହୋଇଛି । ତିନୋଟିଯାକ ଚରିତ୍ର ଯଥାର୍ଥ ଚିତ୍ରିତ ହୋଇଛି । ଏକାଙ୍କିକାର ସଂଳାପ ମଧ୍ୟ ବେଶ୍ ମାର୍ମିକ ଓ ଚିତ୍ତସ୍ପର୍ଶୀ ହୋଇଛି । ଏକାଙ୍କିକାର କେତୋଟି ଆବେଗମୟ ସଂଳାପ ଦୃଷ୍ଟାନ୍ତ ଦିଆ ଯାଇପାରେ । ଯଥା-

ଆଗନ୍ତୁକ - ଏବେ ଆପଣଙ୍କୁ ମୋର ଛୋଟ ଗୋଟାଏ ପ୍ରଶ୍ନ ମି. ସାମନ୍ତରାୟ ! ଜଣେ ଜୁନିୟର ଇଞ୍ଜିନିୟର ହିସାବରେ ଚାକିରି ଆରମ୍ଭ କରି ଚିଫ୍ ଇଞ୍ଜିନିୟର ହିସାବରେ ରିଟାୟର୍ଡ ହେଲାବେଳକୁ ଆପଣଙ୍କ ଦରମା ଥିଲା ତେର ହଜାର ଟଙ୍କା ।

ରତ୍ନାକର- ହୋଇଥିବ ।

ଆଗନ୍ତୁକ - ଯାହା ରେକର୍ଡ କହୁଛି (କେତେକ ମୁହୂର୍ତ୍ତ ସ୍ଥିର ଦୃଷ୍ଟିରେ ପରସ୍ପରକୁ ଅନାଇ ଅନ୍ତରଙ୍ଗ ଭାବରେ ଆଗନ୍ତୁକ କହିଲା)

ଆଗନ୍ତୁକ - ପଇଁତିରିଶ ଲକ୍ଷ ଟଙ୍କା । ବାବାଃ ଏତେଟଙ୍କା ! ଯାହାହେଲେ ବି ଝାଳବୁହା ଧନ ତ । ଏଥର ଆସନ୍ତୁ, ଫାଇନାଲ୍ ରାଉଣ୍ଡକୁ ଯିବା । ସାରା ଜୀବନର ହକ୍ ରୋଜଗାର, ପଇଁତିରିଶ ଲକ୍ଷ ଟଙ୍କା । ରେକର୍ଡପତ୍ରରୁ ଯାହା ଦେଖିଲି ଚାରିଟି କୋଠା ପାଇଁ ଆପଣ କୋଟିଏରୁ ଦେଢ଼କୋଟି ଟଙ୍କା ଖର୍ଚ୍ଚ କରିଛନ୍ତି । ମିସେସ୍ ସାମନ୍ତରାୟଙ୍କର ଅଳଙ୍କାର, ସୁନା ବିସ୍କୁଟ, ଏସବୁର ଦାମ୍-ଯାହା ମୁଁ ହିସାବ କଲି-ଖୁବ୍ କମ୍‌ରେ କୋଟିଏ ଟଙ୍କା । ସେୟାର ସାର୍ଟିଫିକେଟ୍ ଜମା ଅହୁରି ଦୁଇକୋଟି ଟଙ୍କା । ସବୁ ମିଶି ହେଲା ସାଢ଼େ ଚାରିକୋଟି ଟଙ୍କା । ଏଥର କୁହନ୍ତୁ ୩୫ ଲକ୍ଷ ଟଙ୍କା ରୋଜଗାର କରି ସାଢ଼େ ଚାରିକୋଟି ଟଙ୍କା ସମ୍ପତ୍ତି କଲେ କେମିତି ? କେଉଁ ମନ୍ତ୍ର ବଳରେ ? କେଉଁ ଯାଦୁବିଦ୍ୟା ବଳରେ ? କୁହନ୍ତୁ ! କୁହନ୍ତୁ ! କୁହନ୍ତୁ !

(କେତେକ ମୁହୂର୍ତ୍ତ ଅପେକ୍ଷା କଲାପରେ ମଧ୍ୟ ସାମନ୍ତରାୟ ଦମ୍ପତି କୌଣସି ଉତ୍ତର ଦେଇ ନପାରିବା ଦେଖି ସହଜ ସରଳ ସ୍ୱରରେ କହିଲା ଆଗନ୍ତୁକ)

ଆଗନ୍ତୁକ - ମୁଁ ଜାଣିଥିଲି, ଏ ପ୍ରଶ୍ନର ଉତ୍ତର ଆପଣ ଦେଇପାରିବେ ନାହିଁ । ଆପଣଙ୍କ ଭଳି ଶୂନ୍ୟରୁ ସୁନା ସାଉଁଟି ଧନ-ଜନ ଗୋପଲକ୍ଷ୍ମୀରେ ପହଁରୁଥିବା କୌଣସି ଲୋକ ଏ ପ୍ରଶ୍ନର ଉତ୍ତର ଦେଇ ପାରିବ ନାହିଁ । ହେଲେ ଆପଣଙ୍କ ଘରୁ ଏ ଦିଟା ସୁଟ୍‌କେଶ୍ ଭିତରେ ଯାହା ମୁଁ ଭର୍ତ୍ତି କରି ନେଇ ଯାଇଛି, ତା'ର ଉତ୍ତର ଅଛି ମୋ ପାଖରେ । ମୁଁ ଚୋର । ମୁଁ ଚୋରି

କରିଛି । ହେଲା ? (ଇତ୍ୟାଦି)

ଏତାଦୃଶ ସଂଳାପ ସଂଯୋଜନା କରି ନାଟ୍ୟକାର ବିଶ୍ୱଜିତ୍ ଚୋର ଏକାଙ୍କିକାଟିକୁ ବେଶ୍ ଚମତ୍କାର ଭାବେ ରଚନା କରିପାରିଛନ୍ତି ।

## ଅନ୍ତରା

ବିଶ୍ୱଜିତ୍ ଦାସଙ୍କ ପୂର୍ଣ୍ଣାଙ୍ଗ ନାଟକ ଗୁଡ଼ିକରେ ଯେପରି ଭିନ୍ନ ସ୍ୱାଦର ଆବେଦନ ଦେଖିବାକୁ ମିଳେ, ଏକାଙ୍କିକା ମାନଙ୍କରେ ବି ଭିନ୍ନ ଭିନ୍ନ ପ୍ରକାର ନାଟ୍ୟ ବୈଚିତ୍ର୍ୟ ପରିଦୃଷ୍ଟ ହୁଏ । 'ଅନ୍ତରା' ବିଶ୍ୱଜିତ୍ ଦାସଙ୍କର ସେହିପରି ଏକ ଭିନ୍ନ ସ୍ୱାଦର ଏକାଙ୍କିକା । ଏହା କେତେ ମାତ୍ରାରେ ସାଧାରଣ ଜନମାନସକୁ ସ୍ପର୍ଶ କରିବ, ତାହା ବଡ଼କଥା ନୁହେଁ । ଏହାର ନିଆରା ରଚନା ଶୈଳୀ ଏବଂ ସ୍ୱତନ୍ତ୍ର ପ୍ରୟୋଗ ପରିପାଟୀ ଏକାଙ୍କିକାଟିକୁ ପାରଂପରିକ ଶଗଡ଼ଗୁଳାରୁ ମୁକୁଳାଇ ଭିନ୍ନ ଆବେଗ ଏବଂ ନିଆରା ଢଙ୍ଗରେ ଗତିଶୀଳ କରାଇ ପାରିଛି ।

'ଅନ୍ତରା' ମାତ୍ର ତିନୋଟି ଚରିତ୍ରକୁ ନେଇ ରଚିତ । ସେମାନେ ହେଲେ – ତୀର୍ଥବାସୀ ଗୌତମ ଓ ରାଧା । ଏହି ଏକାଙ୍କିକାଟି ଶେଷ ହୋଇ ମଧ୍ୟ ଶେଷ ହୋଇ ନ ଥିଲା ପରି ପ୍ରତୀୟମାନ ହୁଏ । ଏହାକୁ ଏକ ପରୀକ୍ଷା ଧର୍ମୀ ଏକାଙ୍କିକା କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ନିଜେ ନାଟ୍ୟକାର ବିଶ୍ୱଜିତ୍ ଏହାକୁ ଏକ ଅପୂର୍ଣ୍ଣାଙ୍ଗ ନାଟକ ବୋଲି କହିଛନ୍ତି । ଏକାଙ୍କିକାର ପରିଣତି ଦର୍ଶକ ପାଠକଙ୍କ ଉପରେ ଛାଡ଼ି ଦେଇଛନ୍ତି ନାଟ୍ୟକାର । ନାଟକର ଅବଶିଷ୍ଟାଂଶ ଭବିଷ୍ୟତ ଅନିଶ୍ଚିତ ବୋଲି ନିଜେ ସେ ଘୋଷଣା କରିଦେଇଛନ୍ତି । ଏହି ଏକାଙ୍କିକାର ସଂଳାପ ଦୀର୍ଘ ଏବଂ ସଙ୍ଘାତ ସଂକ୍ଷିପ୍ତ । ସଂଳାପ ଗୁଡ଼ିକ କିନ୍ତୁ ବେଶ୍ ଉଚ୍ଚମାନର ଏବଂ ପ୍ରାଣଛୁଆଁ । ଏହି ଭିନ୍ନ ସ୍ୱାଦର ପ୍ରୟୋଗବାଦୀ ଏକାଙ୍କିକାର ଭିନ୍ନ ଏକ ସୌନ୍ଦର୍ଯ୍ୟର ସାନ୍ଦ୍ରତା ଆକଳନ କରିହୁଏ । କିନ୍ତୁ ଏହି ନାଟ୍ୟାଂଶରେ ଚରିତ୍ରର ବିଚିତ୍ର ଚିତ୍ରଣ ଏବଂ ସାମାଜିକ ଚିତ୍ରର ଅଙ୍କନ ବେଶ୍ ଆକର୍ଷଣୀୟ । ଚାକିରିରେ ପରସ୍ପର ଗୋଡ଼ ଟଣାଟଣି ହୋଇ ଈର୍ଷା ଓ ପରଶ୍ରୀକାତରତାର ଚିତ୍ର ଏକାଙ୍କିକାର ଅନ୍ତଃସ୍ୱରରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ବିଶେଷକରି ଈର୍ଷା, ଅପକାର ଚିନ୍ତା ସହିତ ପ୍ରଶାସନିକ ଜଟିଳତାର ଚିତ୍ର ଏକାଙ୍କିକାରେ ବିଶେଷ ଭାବରେ ସଂଯୋଜିତ ହୋଇଅଛି । ଏକାଙ୍କିକା 'ଅନ୍ତରା'ରେ ନାଟ୍ୟକାର ବହୁ ସାମାଜିକ ସଙ୍କଟ ତଥା ସମସ୍ୟାର ଚିତ୍ର ଉତ୍ଥାପନ କରିଥିଲେ ମଧ୍ୟ ଏହାର ସଂଭାବନା ବା ସମାଧାନର ପଥ ନିର୍ଦ୍ଦିଷ୍ଟ କରାଯାଇନାହିଁ ।

ବିଶ୍ୱଜିତ୍‌ଙ୍କର ଏଇ ନିଆରା ଏକାଙ୍କିକା 'ଅନ୍ତରା' ତତ୍କାଳୀନ ନବନାଟ୍ୟ ଆନ୍ଦୋଳନରେ

ଯେ ଏକ ସ୍ୱତନ୍ତ୍ର ଭାବସ୍ପନ୍ଦନ ଜାଗ୍ରତ କରିବାରେ ସମର୍ଥ ହୋଇପାରିଥିବ, ଏଥିରେ ସନ୍ଦେହ ନାହିଁ ।

## ମୁଖା

'ମୁଖା' ବିଶ୍ୱଜିତ୍ ଦାସଙ୍କର ଅନ୍ୟଏକ ନାରୀଚରିତ୍ର ବିହୀନ ବଳିଷ୍ଠ ତଥା ପ୍ରଭାବଶାଳୀ ଏକାଙ୍କିକା, ଯାହାର ଭାବକଳ୍ପ ଅତ୍ୟନ୍ତ ସୁଦୂର ପ୍ରସାରୀ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସଘାତ ଏପରି ଭାବେ ସଂଯୋଜିତ, ଯାହାକି ଏକାଙ୍କିକାକୁ ଉତ୍କଣ୍ଠାପୂର୍ଣ୍ଣ କରିବାରେ ସମର୍ଥ ହୋଇପାରିଛି । ରଚନାଟିର ନାଟକୀୟତା ଅତ୍ୟନ୍ତ ତୀକ୍ଷ୍ଣ ଏବଂ ସଂଳାପ ସଂଯୋଜନା ଉନ୍ନତ ଓ ପାତ୍ରାଭିମୁଖୀ ।

ଏକାଙ୍କିକାର କଥାବସ୍ତୁ ଏକ ଦୁର୍ଦ୍ଦାନ୍ତ ଡକାୟତ ଦୁର୍ଜନ ସିଂର ଜୀବନ କାହାଣୀକୁ ଭିତ୍ତିକରି ରଚିତ । ଦୁର୍ଜନ ସିଂ ଏକ ଦୁର୍ଦ୍ଦାନ୍ତ ଗୁଣ୍ଡା ଓ ଚୋରି ଡକାୟତିରେ ପଟୁ । ପୋଲିସ୍ ଧରି ନ ପାରିବାରୁ ତାକୁ କେହି ଧରାଇ ଦେଲେ ଦଶ ହଜାର ଟଙ୍କା ପୁରସ୍କାର ଦେବାର ଘୋଷଣା କରାଯାଇଛି । ଏହି ଅବସ୍ଥାରେ ସମୟ ଚକ୍ରରେ ଦୁର୍ଜନ ସିଂ ସହିତ ସାକ୍ଷାତ ହୋଇଛି କନେଷ୍ଟବଲ୍ – ମାଧବର । କିନ୍ତୁ ଦୁର୍ଜନ ସିଂ ମାଧବକୁ ବୋକା ବନାଇ ବେଶ୍ ଚତୁରତାର ସହ ତା'ର ପୋଲିସ୍ ପୋଷାକକୁ ନିଜେ ପରିଧାନ କରି ନିଜେ ପୋଲିସ୍‌ରେ ରୂପାନ୍ତରିତ ହୋଇଯାଇଛି । ନିଜେ ପୋଲିସ୍ ସାଜିଲାପରେ ମାଧବକୁ ଗୁଣ୍ଡାରେ ପରିଣତ କରିଦେଇଛି । ମାଧବ ସେଥିରୁ କ୍ଷ୍ୟାନ୍ତ ହୋଇ ତାର ନିଜ ପୋଲିସ୍ ପୋଷାକ ପାଇଁ ଯେତେ ଅନୁରୋଧ କଲେ ବି ଦୁର୍ଜନ ସିଂକୁ ତାହା ପ୍ରଭାବିତ କରିପାରିନାହିଁ । ପୋଲିସ୍ ଭାବରେ ନିଜର କର୍ତ୍ତବ୍ୟ ଠିକ୍ ଭାବରେ ନକଲେ ତାହାର ଚାକିରି ଚାଲିଯିବ ବୋଲି ଦୁର୍ଜନ ସିଂକୁ ଯେତେ ସତର୍କ କରାଇ କାକୁତିମିନତୀ କଲେ ବି ଦୁର୍ଜନ ସିଂ ସେସବୁ କିଛି ଶୁଣିନାହିଁ । ବରଂ କନେଷ୍ଟବଲ୍ ମାଧବ ଓ ଅନ୍ୟଜଣେ ବ୍ୟକ୍ତି ଗୁଣନିଧିକୁ ମୁଖା ପିନ୍ଧାଇ ଦୁଇଟା ଡକାୟତ କରାଇ ଦେଇଛି । ସେମାନଙ୍କ ହସ୍ତରେ ଛୁରାଧରାଇ ଦେଇ ଅନ୍ୟମାନଙ୍କ ଠାରୁ ଟଙ୍କା ଡକାୟତି କରାଇବାକୁ ପ୍ରରୋଚିତ କରିଛି । ଦୁର୍ଜନ ସିଂର ଆଦେଶକୁ ଏଡ଼ାଇ ଦେବାର କାହାର ଶକ୍ତି ନାହିଁ । ସମସ୍ତେ ଜାଣୁଛନ୍ତି ତାକୁ ପୋଲିସ୍ ଭାବରେ । ସେ ବେଶ୍ ଚତୁରତାର ସହିତ ପୋଲିସ୍ ଅଭିନୟ କରି ସେ ଦୁହିଁକୁ ଗୁଣ୍ଡା ସଜାଇ ଅନ୍ୟମାନଙ୍କୁ ଭୟଭୀତ କରାଇ ଡକାୟତି କରି ଦୁଇ ରାଜନୈତିକ ନେତା ଏବଂ ଆଧ୍ୟାତ୍ମିକ ପଣରେ ସନ୍ନ୍ୟାସୀ ଯୋଗୀ ସାଜିଥିବା ସ୍ୱାମୀଙ୍କ ଠାରୁ ଅନେକ ଟଙ୍କା ଡକାୟତି କରି ନେଇଛି । ତାହାପରେ ବି ମାଧବ ତାର ପୋଲିସ ପୋଷାକ ପାଇଁ ନେହୁରା ହୋଇଛି କିନ୍ତୁ ଦୁର୍ଜନ ସିଂ ତାଚ୍ଛଲ୍ୟ କରି ଟଙ୍କା ଦେବାର ପ୍ରଲୋଭନ ଦେଖାଇଛି ।

ଏହିପରି ଏକ ସଂକ୍ଷିପ୍ତ କଥାବସ୍ତୁକୁ ଆଧାର କରି ନାଟ୍ୟକାର ବିଶ୍ୱଜିତ୍ ଦାସ ଏହି ଏକାଙ୍କିକା ମାଧ୍ୟମରେ ସମାଜର ବଡ଼ ପଣ୍ଡା ବୋଲାଉଥିବା ବ୍ୟକ୍ତିମାନଙ୍କୁ ମଧ୍ୟ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ରାଜନୈତିକ ନେତା ଅନ୍ୟଠାରୁ ଚାନ୍ଦା ଆଦାୟ କରି ଆଣିବା କିମ୍ବା ସନ୍ନ୍ୟାସୀ ସାଜି ସ୍ୱାମୀଜି ଭକ୍ତମାନଙ୍କୁ ପ୍ରତାରିତ କରି ଅର୍ଥ ଆଦାୟ କରିବାର ପ୍ରବୃତ୍ତିକୁ ଜନସାଧାରଣଙ୍କ ସମ୍ମୁଖରେ ପରିଚିତ କରାଇ ଦେଇଛନ୍ତି ।

ଚୋର ବା ଡକାୟତ ସାଧାରଣ ଲୋକଙ୍କ ପାଖରୁ ଯେପରି ଚୋରି କରୁଛନ୍ତି ସେହିପରି ଅନ୍ୟ ସମାଜପତିମାନେ ଶୋଷଣ କରୁଥିବା ଚିତ୍ର ପରୋକ୍ଷରେ ଦର୍ଶାଇଛନ୍ତି ।

ସୁତରାଂ ନାଟ୍ୟକାର ବିଶ୍ୱଜିତ୍ 'ମୁଖା' ଏକାଙ୍କିକାରେ ପାତ୍ରାଭିମୁଖୀ ସଂଳାପ ସଂଯୋଜନା ସହିତ ଯଥାର୍ଥ ନାଟକୀୟତା ଭିତରେ ରଚନାଟିକୁ ବେଶ୍ ଉତ୍କର୍ଷପୂର୍ଣ୍ଣ ଏବଂ ପ୍ରଭାବଶାଳୀ କରି ଗଢ଼ି ତୋଳିଛନ୍ତି ।

## ସ୍ତମ୍ଭକାର ବିଶ୍ୱଜିତ୍ ଦାସ

ନାଟ୍ୟକାର ଭାବେ ପ୍ରଚୁର ଲୋକପ୍ରିୟତା ଓ ପ୍ରସିଦ୍ଧି ଅର୍ଜନ କରିବା ପରେ ଅନେକ ଦିନ ଧରି ନୀରବି ଯାଇଥିଲେ ବିଶ୍ୱଜିତ୍ ଦାସ । ସରକାରୀ କର୍ମର ବ୍ୟସ୍ତତା ଓ ସାଂସାରିକ ଦାୟିତ୍ୱରେ ବ୍ୟସ୍ତରହି ସେ ଆଉ ନାଟ୍ୟ ରଚନାରେ କିମ୍ବା ନାଟ୍ୟ ନିର୍ଦ୍ଦେଶନାରେ ଅଧିକ ସମୟ ବିନିଯୋଗ କରିପାରୁନଥିଲେ । ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସଂସ୍କୃତି ସଂପନ୍ନ ବ୍ୟକ୍ତିତ୍ୱ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଲୋକସଂପର୍କ ଅଧିକାରୀ ଭାବେ ଦୀର୍ଘକାଳ ଧରି ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ିଥିଲା । କାର୍ଯ୍ୟରୁ ଅବସର ନେବାପରେ 'ସମ୍ବାଦ' ଦୈନିକ ପତ୍ରରେ ସାପ୍ତାହିକ ସ୍ତମ୍ଭ ରଚନା କରିବାକୁ ତାଙ୍କୁ ଅନୁରୋଧ ଆସିଲା ଏବଂ ସେହି ଅନୁରୋଧକ୍ରମେ ସେ କ୍ରମାଗତ ସ୍ତମ୍ଭ ରଚନା କଲେ । ସେହି ସ୍ତମ୍ଭଗୁଡ଼ିକ କ୍ରମଶଃ ବହୁଳ ଭାବରେ ଲୋକପ୍ରିୟତା ଅର୍ଜନ କରିବାକୁ ଲାଗିଲା । ସ୍ତମ୍ଭ ଗୁଡ଼ିକରେ ଗୋଟିଏ ଗୋଟିଏ ଅନୁଭୂତି ସମ୍ପନ୍ନ କଥାବସ୍ତୁର ଛତ୍ରେଛତ୍ରେ ସାଂପ୍ରତିକ ସମାଜର ହାନିଲାଭର ବିବରଣୀ ଉପସ୍ଥାପିତ କରାଯାଉଥିଲା । ବାସ୍ତବତାର ଗଣ୍ଡିଉପରେ ସାମାଜିକ ବିଷୟବସ୍ତୁର ଆଲେଖ୍ୟ ପାଠକମାନଙ୍କୁ ବେଶ୍ ବିମୁଗ୍ଧ କରୁଥିଲା । ୧୯୯୮ ମସିହାରୁ ୨୦୦୧ ମସିହା ମଧ୍ୟରେ 'ସମ୍ବାଦ' ଦୈନିକ ପତ୍ରରେ ପ୍ରକାଶିତ ନିୟମିତ ସ୍ତମ୍ଭଗୁଡ଼ିକ ମଧ୍ୟରୁ କେତେକ 'ଲାର୍କ ବୁକ୍‌ସ' ପ୍ରକାଶନୀ ସଂସ୍ଥା ଦ୍ୱାରା ପ୍ରକାଶିତ 'ଭିନ୍ନସ୍ୱର' ଶୀର୍ଷକ ସଂକଳନରେ ସଂକଳିତ ହୋଇଅଛି । ଏହି ସ୍ତମ୍ଭ ଗୁଡ଼ିକର ସରଳ ତରଳ ଭାଷା, ମନୋରମ ଶୈଳୀ ଏବଂ ଚିତ୍ତସ୍ପର୍ଶୀ ବିଷୟବସ୍ତୁ ତାଙ୍କର ଲେଖକୀୟ ଦକ୍ଷତା ଓ ପ୍ରତିଭାର ପରିଚୟ ପ୍ରତିପାଦିତ କରେ । ଖୁବ୍ କମ୍ ବାକ୍ୟ ମଧ୍ୟରେ ଅନେକ କଥା

କହିବା ଏବଂ ଦକ୍ଷତାର ସହ ଉପସ୍ଥାପନ କରିବା ବିଶ୍ୱଜିତ୍ ଦାସଙ୍କ ଅନ୍ୟତମ ବୈଶିଷ୍ଟ୍ୟ । ସରଳ ବୋଧଗମ୍ୟ ଭାଷା ଏବଂ ଉତ୍ତମ ଲୋକପ୍ରିୟ ଶୈଳୀରେ ନିଜର ଅଭିବ୍ୟକ୍ତିକୁ ବ୍ୟକ୍ତକରି କୁଶଳୀ ଲେଖକ ବିଶ୍ୱଜିତ୍ ପାଠକମାନଙ୍କର ଖୁବ୍ ନିକଟବର୍ତ୍ତୀ ହୋଇପାରିଛନ୍ତି । ଅନୁଭୂତିସଂଭୂତ କଥା ଓ କାହାଣୀ ମାଧ୍ୟମରେ ସମାଜ ତଥା ସାଂପ୍ରତିକ ଜନଜୀବନର ବାସ୍ତବ ଚିତ୍ର ଅଙ୍କନ କରି ସ୍ତମ୍ଭକାର ବିଶ୍ୱଜିତ୍ ଏକ ନିଆରା ପରିଚୟ ସୃଷ୍ଟି କରି ପାରିଥିଲେ ।

'ଭିନ୍ନସ୍ୱର' (୨୦୦୪) ସ୍ତମ୍ଭ ସଂକଳନ ଗ୍ରନ୍ଥରେ 'ମିଠୁ' ଠାରୁ 'ଜାତକ' ପର୍ଯ୍ୟନ୍ତ ସମୁଦାୟ ଷାଠିଏଟି ସ୍ତମ୍ଭ ବା ଗଦ୍ୟ ରଚନା ପତ୍ରସ୍ଥ ହୋଇଅଛି । ଏହି ସ୍ତମ୍ଭ ରଚନା ଗୁଡ଼ିକ ଭିନ୍ନ ଭିନ୍ନ ପର୍ଯ୍ୟାୟର । କେତେକ ଗଳ୍ପଧର୍ମୀ ତ କେତେକ ସମ୍ବାଦ ଧର୍ମୀ । କେତେକ ତୀର୍ଯ୍ୟକ ବ୍ୟଙ୍ଗଧର୍ମୀ ତ କେତେକ ରମ୍ୟ ରଚନା ପର୍ଯ୍ୟାୟର ଏବଂ ଆଉ କେତେକ ନିଜର ସ୍ମୃତି ଅନୁଭୂତି ସଂବଳିତ ।

**କାହାଣୀ ଧର୍ମୀ**

'ଭିନ୍ନ ସ୍ୱର'ର ପ୍ରଥମ ରଚନା 'ମିଠୁ'ଟି ଗଳ୍ପଧର୍ମୀ । ଏଥିରେ ଏକ କ୍ଷୁଦ୍ରଗଳ୍ପର ଅବତାରଣା ମାଧ୍ୟମରେ ସ୍ତମ୍ଭକାର ବିଶ୍ୱଜିତ୍ ଏକ ନିଛକ ଚିରନ୍ତନ ସତ୍ୟର ମହିମାନ୍ୱିତ ଦିଗଟି ଉନ୍ମୋଚିତ କରିଛନ୍ତି ।

'ମିଠୁ' ମୟୂରଭଞ୍ଜ ଜଙ୍ଗଲରୁ ଧରାହୋଇ ଆସିଥିବା ଛୋଟ ଶୁଆଟିଏ । ଶୁଆଟି ଆସି ପଞ୍ଜୁରୀ ଭିତରେ ରହି ଗୃହସ୍ତର ପ୍ରଦତ୍ତ ଖାଦ୍ୟ ଖାଇ ରହିଛି ଏବଂ 'ମା', ଯା, 'ଖା' ଆଦି ଖଣ୍ଡିକଥା କହି ସଭିଙ୍କର ଆଦରର ପାତ୍ର ହୋଇ ରହିଥିଲେ ମଧ୍ୟ ବିଭିନ୍ନ ସମୟରେ ଗୃହର ସଦସ୍ୟମାନଙ୍କର ପ୍ରତିଟି ଆଦେଶ, ଉପଦେଶ ଓ ଗାଳିମନ୍ଦକୁ ସହ୍ୟକରି ରହିବାକୁ ପଡ଼ିଛି ।

ମଣିଷ ହେଉ ବା ପଶୁପକ୍ଷୀ, ସମସ୍ତେ ଚାହାନ୍ତି ସ୍ୱାଧୀନତା । ତେଣୁ ସୁନାର ପଞ୍ଜୁରୀରେ ଦୁଧଭାତ ଖାଇବାର ସୁଖଠାରୁ ସ୍ୱାଧୀନ ଭାବରେ ଅରଣ୍ୟରେ ବୁଲି ନିଜର ଫଳମୂଳ ଆହାର କରିବା ଯେକୌଣସି ପଶୁପକ୍ଷୀ ନିମନ୍ତେ ଅଧିକ ଆନନ୍ଦଦାୟକ । ସେହି ପରିପ୍ରେକ୍ଷୀରେ ମିଠୁ ତା'ର ସ୍ଥାୟୀ ଠିକଣାଯୁକ୍ତ ପଞ୍ଜୁରୀଟି ଛାଡ଼ି ଦିନେ ନିଜର ଡେଣା ଝାଡ଼ି ଉଡ଼ି ଉଡ଼ି ଯାଇ ସୁଦୂର ନୀଳ ଆକାଶରେ କେଉଁଠି ହଜିଗଲା । ଗଲା ଯେ ଗଲା ଆଉ ଫେରିଲା ନାହିଁ ।

ପଶୁପକ୍ଷୀଙ୍କୁ ନେଇ ବିଭିନ୍ନ ଭାଷା ସାହିତ୍ୟ, ଗଳ୍ପ, କବିତା ଉପନ୍ୟାସମାନ ରଚିତ ହୋଇଅଛି । ସେହି କ୍ରମରେ ବିଶ୍ୱଜିତଙ୍କର ଏହି କ୍ଷୁଦ୍ର ସଂଯୋଜନାର ନିଶ୍ଚିତଭାବେ ଯେ ଏକ ପ୍ରଭାବଶାଳୀ ଦିଗ ରହିଛି, ଏଥିରେ ସନ୍ଦେହ ନାହିଁ ।

**'ଅନ୍ତିମ ଜୀଜ୍ଞାସା'** ବିଶ୍ୱଜିତଙ୍କର ଆଉ ଏକ ଗଳ୍ପଭିତ୍ତିକ ସ୍ତମ୍ଭ, ଯହିଁରେ ସେ ଦୁଇଟି ଜୀଜ୍ଞାସା ଦୃଷ୍ଟାନ୍ତ ଭାବେ ଉପସ୍ଥାପନ କରିଛନ୍ତି । ମଣିଷ ସଂସାର ଜଞ୍ଜାଳରେ ଘାଣ୍ଟି ହୋଇ

ଧନସଂପଦ ନିମନ୍ତେ ଗଭୀରଭାବେ ଆସକ୍ତ ହୋଇଯାଏ । ଜୀବନର ଶେଷ ମୁହୂର୍ତ୍ତରେ ସେ ବୁଝିପାରେ ଏତେ ଘର୍ମାକ୍ତ ଜୀବନ ଦୌଡ଼ର ଶେଷ ପରିଣତି କ'ଣ ? କ'ଣ ମିଳେ ତା'ର ଏଇ ଜୀବନ ସଂଗ୍ରାମରେ ?

ଏହି ପରିପ୍ରେକ୍ଷୀରେ ସେ ସନାତନଙ୍କ ଜୀବନ ଧାରାରେ ଧନ ସମ୍ପତ୍ତି ଅର୍ଜନ କରି ସବୁ ଛାଡ଼ିଦେଇ ଶେଷ ନିଶ୍ୱାସ ତ୍ୟାଗ କରିବା ମୁହୂର୍ତ୍ତରେ ପରିଣତ ବୈରାଗ୍ୟର ଦୀର୍ଘଶ୍ୱାସ ସହିତ ମଞ୍ଚଶିଳ୍ପୀ ମନୋରଞ୍ଜନଙ୍କ କଳାକାର ଜୀବନ ସମୃଦ୍ଧି ମଧ୍ୟରେ ଦାରିଦ୍ର୍ୟର ଉପହାସ କିପରି ତାଙ୍କୁ ଚରମ ଅସ୍ୱଚ୍ଛଳ ଅବସ୍ଥାରେ ଉପନୀତ କରାଇଛି, ତାହାର କରୁଣ ଚିତ୍ର ଅଙ୍କନ କରିଅଛନ୍ତି ।

'ଗୋଟିଏ ଝଡ଼ର ଅବସାନ' - ରଚନାଟିରେ ସାଂପ୍ରତିକ ପୁରସ୍କାରର ଧାରା କିପରି ଲାଞ୍ଚ, ଲବି ଓ ଧରାଧରି ପ୍ରକ୍ରିୟାରେ ଆଶ୍ରିତ, ତାହାର ଏକ ଶାଣିତ କଟାକ୍ଷସମ୍ବଳିତ ଚିତ୍ର ବର୍ଣ୍ଣିତ ହୋଇଅଛି । କବିତା ରଚନାରେ ସାଧନାରତ ନାରାୟଣ ଚୌଧୁରୀ କିଛିଟା ଯଶ ଓ ପ୍ରସିଦ୍ଧି ଲାଭ କରିଥିବାବେଳେ ରାଜ୍ୟର ଏକ ଧନଶାଳୀ ଶିଳ୍ପପତି ତାଙ୍କଠାରୁ ଜଣେ କନିଷ୍ଠ କବି ମନମୋହନଙ୍କୁ ପୁରସ୍କାର ପ୍ରଦାନ କଲେ । ଏଥିରେ ନାରାୟଣ ବିଶେଷ ବ୍ୟଥିତ ହୋଇ ପଡ଼ିଲେ । ଖଣି ଲିଜ୍‌ର ଅଭୟ ପାଇଁ ମନମୋହନଙ୍କୁ ତିନିଲକ୍ଷ ଟଙ୍କାର ଦୁର୍ଗାଦେବୀ ପୁରସ୍କାର ଦିଆଯାଇଥିବା ସମ୍ବାଦ ନାରାୟଣ ପ୍ରଚାର କରିବାପରେ ମନମୋହନ ନାରାୟଣଙ୍କ ପାଟିବନ୍ଧ କରି ଏହି ପ୍ରଚାରକୁ ବନ୍ଦ କରିବା ନିମନ୍ତେ ନିଜେ ଚେଷ୍ଟାକରି ଅନ୍ୟଜଣେ ଶିଳ୍ପପତିଙ୍କ ଠାରୁ ନାରାୟଣ ଚୌଧୁରୀଙ୍କୁ ଏକଲକ୍ଷ ଟଙ୍କାର 'ବୀଣାପାଣି ପୁରସ୍କାର' କରାଇଦେଲେ । ତାହାପରେ ଯାଇ ସେ ଝଡ଼ର ଅବସାନ ଘଟିଥିଲା ।

'ନିର୍ବାଚନ' - ବିଶ୍ୱଜିତ୍‌ଙ୍କର ଏକ ଆବେଗମୟ ରଚନା । ସମ୍ପ୍ରତି ଷଡ଼ଯନ୍ତ୍ରର ଶିକାର ହୋଇ ପ୍ରକୃତ ଜନସେବୀକୁ କିପରି ପରାଜୟ ବରଣ କରିବାକୁ ପଡ଼େ ତା'ର ଏକ ଜ୍ୱଳନ୍ତ ଚିତ୍ର ଏହି ରଚନାରେ ଚିତ୍ରଣ କରାଯାଇଛି । ଉତ୍ସର୍ଗୀକୃତ, ଗାନ୍ଧିବାଦୀ, ଆଦର୍ଶବାନ୍ ନେତା ବୀର କିଶୋରବାବୁ ନିଜର ଉପରିସ୍ଥ ନେତାଙ୍କ ଗୁଣକୀର୍ତ୍ତନ ନ କରିବା ଦ୍ୱାରା କିପରି କୌଣସି ସହାୟତା ନ ପାଇ ନିଜର ଜମିବାଡ଼ି ବିକ୍ରୟ କରି ବି ନିର୍ବାଚନରେ ଧରାଶାୟୀ ହୋଇଛନ୍ତି ତାହା ବେଶ୍ ଏକ ମାର୍ମିକ ଶୈଳୀରେ ବର୍ଣ୍ଣିତ ହୋଇଅଛି ।

'ଦୁର୍ଭେଦ୍ୟ ଦୁର୍ଗ' – ବିଶ୍ୱଜିତ୍‌ଙ୍କର ଏକ ଭିନ୍ନ ଭାବର ରଚନା । ଦୁଇ ପଡ଼ୋଶୀ ବସନ୍ତ ରାଉତରାୟ ଓ କୃଷ୍ଣଚନ୍ଦ୍ର ମହାପାତ୍ରଙ୍କ ବାସଭବନ ନିର୍ମାଣ ଓ ଚାକିରି ବୃତ୍ତାନ୍ତ ସହିତ କୃଷ୍ଣବାବୁଙ୍କ ପୁସ୍ତକ ପାଠର ଅଭ୍ୟାସ ବୃତ୍ତାନ୍ତ ରଚନାଟିରେ ବେଶ୍ ଏକ ମନୋଜ୍ଞ ଶୈଳୀରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ 'ପୁନଶ୍ଚ କୃଷ୍ଣଚରିତ' ଶୀର୍ଷକ ରଚନାରେ ସେ କୃଷ୍ଣଚନ୍ଦ୍ର ମହାପାତ୍ରଙ୍କ

ଜୀବନ କାହାଣୀର ଅନ୍ୟ ରହସ୍ୟ ଉପସ୍ଥାପନ କରିଅଛନ୍ତି । କଥାବସ୍ତୁଟି ବେଶ୍ ନାଟକୀୟ ହୋଇଛି । କୃଷ୍ଣବାବୁଙ୍କ ଅଫିସ୍‌ର ଅନ୍ୟତମ କୁଟିଳ ଧୂର୍ତ୍ତ କର୍ମଚାରୀ ଦୟାନିଧି ସିଂଙ୍କ ପ୍ରରୋଚନାରେ ଲଳିତା ନାମ୍ନୀ କର୍ମଚାରୀ ସହିତ କୃଷ୍ଣଚନ୍ଦ୍ରଙ୍କ ମଧୁର ମିଳନ ଘଟାଇଛନ୍ତି । ଲଳିତା ଅନ୍ତଃସତ୍ତ୍ୱା ହେବାପରେ କୃଷ୍ଣବାବୁ ଲଳିତାଙ୍କୁ ନୀତିଗତଭାବେ ବିବାହ କରିବାକୁ ବାଧ ହୋଇଛନ୍ତି । କିନ୍ତୁ ସେତିକିରେ ସେ ସଂକଟମୁକ୍ତ ହୋଇନାହାନ୍ତି । ଶ୍ରୀ ସିଂ ସରକାରୀ ଅର୍ଥ ତୋଷରପାତ ଅପରାଧରେ ଷଡ଼ଯନ୍ତ୍ର କରି କୃଷ୍ଣବାବୁଙ୍କୁ ଅଭିଯୁକ୍ତ କରିବାପରେ ଲଳିତା ଆଦି ସମସ୍ତଙ୍କ ପ୍ରତି ତାଙ୍କର ବିଶ୍ୱାସ ତୁଟିଯାଇଛି । ତା'ପରେ ସେ ଆଉ କାହା ସହିତ ସଂପର୍କ ନ ରଖି କେବଳ ସେ ବାସ୍ତବ ସତ୍ୟଯୁକ୍ତ ଫିଜିକ୍‌ସ ପାଠରେ ହିଁ ବ୍ୟସ୍ତ ରହିଛନ୍ତି ।

'ଭିନ୍ନସ୍ୱର' ଗ୍ରନ୍ଥର 'ଭୋଜି' ଏକ ପ୍ରଭାବଶାଳୀ ଗଳ୍ପ । ନିଷ୍ପାପର ଜନସେବୀର ପ୍ରକୃତ ସମ୍ମାନ କିପରି ସଂଗୁପ୍ତ ହୋଇ ରହିଯାଇଥାଏ ଏବଂ ପରବର୍ତ୍ତୀ ସମୟରେ ଧର୍ମକୁ ଆଖିଠାର ପରି ତାହା ଲୋକଲୋଚନକୁ ଆସିଲେ ମଧ ପ୍ରକୃତ ନିଷ୍ପାପର ବ୍ୟକ୍ତିଟି କେବଳ ଦାରିଦ୍ର୍ୟର କୁହେଳି ଭିତରେ ସଢୁଥାଏ – ତା'ର ଦୃଷ୍ଟାନ୍ତ 'ଭୋଜି' ଗଳ୍ପର ନୀଳାମ୍ବର ବାବୁଙ୍କ ଜୀବନ କାହାଣୀରୁ ସ୍ପଷ୍ଟ ହୋଇଅଛି । 'ସମାନ୍ୟକଥା' ଭିନ୍ନସ୍ୱରସ୍ଥ କ୍ଷୁଦ୍ରଗଳ୍ପ ଧର୍ମୀ ରଚନାଟିଏ । ଦୁର୍ନୀତି ଠାରୁ ଦୂରରେ ଥିବା ଜଣେ ସଚ୍ଚୋଟ କର୍ମଚାରୀକୁ କିପରିଭାବେ ପ୍ରତାରିତ କରାଯାଇଛି, କିପରି ତାଙ୍କୁ ଲାଞ୍ଚର ବଳୟ ମଧକୁ ପ୍ରକାରାନ୍ତରେ ଟାଣି ନିଆଯାଇଛି, ତାର ଏକ ନିଛକ ଦୃଷ୍ଟାନ୍ତ ଅଙ୍କିତ ହୋଇଛି ବିଶ୍ୱଜିତ୍‌ଙ୍କ ଲେଖନୀରେ ସନ୍ତୋଷବାବୁଙ୍କ ଠାରେ । ଲାଞ୍ଚକୁ ଆଜୀବନ ଘୃଣା କରି ଆସିଥିବା ବ୍ୟକ୍ତି – ସନ୍ତୋଷବାବୁ କିପରି ସମୟ ଚକ୍ରରେ ନିଜେ ଲାଞ୍ଚ ଦେବାକୁ ଆଗଭର ହୋଇଛନ୍ତି ତାହା ଚିତ୍ରିତ ହୋଇଛି 'ସାମାନ୍ୟ କଥା' କଥାବସ୍ତୁରେ ।

'ଗୋପବନ୍ଧୁ, ମେସ୍ ଓ ଛେଳି' ବିଶ୍ୱଜିତ୍‌ଙ୍କର ଏକ ଚମତ୍କାର ହାସ୍ୟରସାତ୍ମକ କାହାଣୀ ଧର୍ମୀ ରଚନା । ନାଟ୍ୟକାର ପଞ୍ଚୁଦାସ ବାସ୍ତବଧର୍ମୀ ନାଟକ ରଚନା କରି ଅଭିନବ ଶୈଳୀରେ ପରିବେଷଣ କରିବାର ଯୋଜନା କରିଥିଲେ । ଗୋପବନ୍ଧୁଙ୍କ ଉପରେ ଏକ ନାଟ୍ୟ ରଚନା କରି ଗୋପବନ୍ଧୁଙ୍କ ପରି ଦିଶୁଥିବା, ଗୋପବନ୍ଧୁଙ୍କ ପରି ଦାଢ଼ି ରଖିଥିବା ଏବଂ ଶିକ୍ଷକତା କରୁଥିବା ବ୍ୟକ୍ତିଟିଏଙ୍କୁ ସାକ୍ଷୀଗୋପାଳ ଅଞ୍ଚଳରୁ ସନ୍ଧାନ କରି ଆଣି ନାଟକ ଅଭ୍ୟାସ ଆରମ୍ଭ କଲେ ମଧ ନାଟ୍ୟକାରଙ୍କ ଉଦ୍ଦେଶ୍ୟ ସାଧିତ ହୋଇପାରିଲା ନାହିଁ । ସେ ବ୍ୟକ୍ତି ଜଣକ ଗୋପବନ୍ଧୁଙ୍କ ପରି ଦିଶୁଥିଲେ ମଧ ସେ ନାଟକର ସଂଳାପ ଉଚ୍ଚାରଣ କରିବାକୁ ଅକ୍ଷମ ଥିଲେ । ତେଣୁ ସେ ଦିନେ ଲୁଚି ପଳାଇଯାଇ ଏ ନାଟକରେ ଅଭିନୟ କରିବା ଜଞ୍ଜାଳରୁ ମୁକ୍ତି ପାଇ ଯାଇଥିଲେ ।

ଏହି ନାଟକଟି ବିଫଳ ହେବା ପରେ ନାଟ୍ୟକାର ପଞ୍ଚୁ ଦାସ ଆଉ ଏକ ଭିନ୍ନ ସ୍ୱାଦର

ନାଟକ ପରିକଳ୍ପନା କରି, ନାଟକ ଅଭ୍ୟାସ କରି ମଞ୍ଚରେ ନିର୍ଦ୍ଧାରିତ ଦିନରେ ମଞ୍ଚସ୍ଥ କଲେ । ଏ ନାଟକର ନାମ ଥିଲା – 'ମା' ମଙ୍ଗଳା ମେସ୍' । ଏହାର କଥାବସ୍ତୁ ହେଲା – ଏକ ପୁରାତନ ଜରାଜୀର୍ଣ୍ଣ କୋଠାରେ ଚାଲୁଥିବା ମେସ୍‌ର ପ୍ରତ୍ୟେକ କୋଠରୀରେ ଥିଲା ବିଲେଇ ଓ ମୂଷାଙ୍କର ଅଗାଧ ପ୍ରବେଶ । ତେଣୁ ନାଟ୍ୟକାର ତଥା ନିର୍ଦ୍ଦେଶକ ପଞ୍ଚୁ ଦାସଙ୍କ ନିର୍ଦ୍ଦେଶକ୍ରମେ ତାଙ୍କର ସହଯୋଗୀ ନାଟ୍ୟକର୍ମୀଗଣ ଅନେକ ମୂଷା ଓ ବିଲେଇଙ୍କୁ ସଂଗ୍ରହ କରି ଗୋଟିଏ ଟୋକେଇରେ ମୁହଁ ବନ୍ଦ କରି ରଖିଥିଲେ । ମେସ୍‌ର ଯୁବ ଅନ୍ତେବାସୀଗଣ ମୂଷା ଓ ବିଲେଇଙ୍କ ଉପଦ୍ରବ ସଂପର୍କରେ ଉଚ୍ଚାରଣ କରିବା ସଙ୍ଗେସଙ୍ଗେ ଟୋକେଇ ଖୋଲି ମଞ୍ଚ ଉପରକୁ ବିଲେଇ ଓ ମୂଷାଙ୍କୁ ଛାଡ଼ି ଦିଆଯିବା ପରେ ମୂଷା ଓ ବିଲେଇ ଗୁଡ଼ିକ ଏଣେତେଣେ ଡିଆଁଡେଇଁ କରି ଅନ୍ତର୍ଦ୍ଧାନ ହୋଇଯାଇଥିଲେ ବି ଗୋଟିଏ ବିଲେଇ ନାଟକର ନାୟକଙ୍କ ଧୋତି ଭିତରେ ଛନ୍ଦି ହୋଇ ମିଆଁଉ ମିଆଁଉ ହେବାକୁ ଲାଗିଲା । ଫଳରେ ନାଟକର ନାୟକ ଏକ ଅସ୍ୱାଭାବିକ ପରିସ୍ଥିତରେ ଉପନୀତ ହୋଇ ନିଜର ସଂଳାପ ଭୁଲି ମଞ୍ଚ ଉପରୁ ନିଷ୍କ୍ରାନ୍ତ ହୋଇଥିଲେ ।

ଏହାପରେ ତାଙ୍କର ଆଉ ଏକ କଳ୍ପନାପ୍ରସୂତ ବାସ୍ତବଧର୍ମୀ ନାଟକ ଥିଲା ବେଶ୍ କୌତୁହଳପ୍ରଦ । କେତୋଟି ଚରିତ୍ର ନାଟକରେ ଭୋଜି କରିବା ନିମନ୍ତେ ମଞ୍ଚ ଉପରକୁ ଏକ ଛେଳିର ପ୍ରବେଶ କରାଇ ବେଶ୍ କୌତୁହଳ ସୃଷ୍ଟି କରାଇଥିଲେ, ଠିକ୍ ଯେପରି ନାଟ୍ୟକାର ଲକ୍ଷ୍ମୀଧର ନାୟକଙ୍କ 'ଜମିଦାର' ନାଟକରେ ମଞ୍ଚକୁ ଛେଳିର ପ୍ରବେଶ କରାଯାଇଥିଲା । ଏଣେ ମଞ୍ଚର ନେପଥ୍ୟରେ ମାଂସ ରନ୍ଧନ କରି ମଞ୍ଚରେ ଆଣି ମାଂସ ଭକ୍ଷଣ କରିବା ଏବଂ ମାଂସର ବାସ୍ନା ପଙ୍ଖା ସାହାଯ୍ୟରେ ପ୍ରେକ୍ଷାଳୟକୁ ଛଡ଼ାଯିବାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । କିନ୍ତୁ ଏହା ମଧ୍ୟରେ ଜୀବନ୍ତ ଛେଳିଟି ମଞ୍ଚରୁ ପ୍ରେକ୍ଷାଳୟରେ ବସିଥିବା ମୁଖ୍ୟ ଅତିଥି ଥିବା ମନ୍ତ୍ରୀଙ୍କ ଉପରକୁ ଲମ୍ଫ ପ୍ରଦାନ କରିବା ଫଳରେ ସମଗ୍ର ଦର୍ଶକ ମଣ୍ଡଳୀ ଇତସ୍ତତ ଭାବେ ଛିନ୍ନଛତ୍ର ହୋଇଗଲେ ଏବଂ ନାଟ୍ୟକାର ତଥା ନିର୍ଦ୍ଦେଶକ ପଞ୍ଚୁ ଦାସ ଓ ତାଙ୍କ ନାଟ୍ୟ ସହଯୋଗୀଗଣ ଛେଳିଟିକୁ ଧରିବାକୁ ପ୍ରେକ୍ଷାଳୟ ଭିତରକୁ ଲମ୍ଫ ପ୍ରଦାନ କରିବାକୁ ବାଧ୍ୟ ହୋଇଥିଲେ ।

ବିଶ୍ୱଜିତ୍ ଦାସ ନିଜେ ଜଣେ ସଫଳ ନାଟ୍ୟକାର ହୋଇଥିବାରୁ ଏପରି ଏକ ହାସ୍ୟରସାତ୍ମକ ନାଟ୍ୟ ପରିସରଯୁକ୍ତ କାହାଣୀ ରଚନାରେ ସାଫଲ୍ୟ ଅର୍ଜନ କରିବାକୁ ସମର୍ଥ ହୋଇପାରିଥିଲେ ।

ବିଶ୍ୱଜିତ୍ ଦାସ କେବଳ ଜଣେ ପ୍ରଭାବଶାଳୀ ନାଟ୍ୟକାର ନୁହଁନ୍ତି, ସେ ମଧ୍ୟ ଜଣେ ବିଶିଷ୍ଟ ମଞ୍ଚ ଏବଂ ଚଳଚିତ୍ର ନିର୍ଦ୍ଦେଶକ । ତେଣୁ ଚଳଚିତ୍ରର ସୁଟିଂ ସମ୍ପର୍କରେ, ମଞ୍ଚ ଅଭିନେତାମାନଙ୍କ ଜୀବନଧାରା ସମ୍ପର୍କରେ ସେ ବହୁ ଅନୁଭୂତି ଓ ଅଭିଜ୍ଞତାର ଅଧିକାରୀ । ସେହି କ୍ରମରେ ଜଣେ ଅଭିନେତାର ଜୀବନର ଦୁରାବସ୍ଥାକୁ ନେଇ **'ରାମହରିଙ୍କ ଶେଷ**

ସଂଗ୍ରାମ' ଶୀର୍ଷକ କ୍ଷୁଦ୍ରଗଳ୍ପଧର୍ମୀ ରଚନାଟିଏ ଲେଖିପାରିଛନ୍ତି ।

ରାମହରି ନିଜର ଯୁବକ ଅବସ୍ଥାରେ ଜଣେ ଦକ୍ଷ ଅଭିନେତା ଥିଲେ ମଧ୍ୟ ପରିଣତ ବୟସରେ ଅଭିନୟ କରିବାର ସୁଯୋଗ ନ ପାଇ ଏକ କ୍ଷୁଦ୍ର ବ୍ୟବସାୟ କରି ନିଜର ଗୁଜୁରାଣ ମେଣ୍ଟାଉଥିବା ବେଳେ ତାଙ୍କୁ 'ଶେଷ ସଂଗ୍ରାମ' ଚଳଚିତ୍ରରେ ଏକ ମନ୍ଦିର ପୂଜକ ଚରିତ୍ରରେ ଅଭିନୟ କରିବାକୁ ନିମନ୍ତ୍ରଣ ମିଳିଥିଲା ଏବଂ ସେ ଅଭିନୟ ନିମନ୍ତେ ଦୁଇ ହଜାର ଟଙ୍କା ପାରିଶ୍ରମିକ ମିଳିବାର ପ୍ରତିଶ୍ରୁତି ମଧ୍ୟ ମିଳିଥିଲା । କିନ୍ତୁ ଦୁଃଖର କଥା ରାମହରିବାବୁ ଗାଁରୁ ନିଜ ହାତରୁ ଖର୍ଚ୍ଚକରି ସହରକୁ ଯାଇ ଅଭିନୟ ନିମନ୍ତେ ସୁଟିଂ ଶେଷ କରିଥିଲେ ମଧ୍ୟ ତାଙ୍କୁ କୌଣସି ପାରିଶ୍ରମିକ କିମ୍ବା ରାସ୍ତାଖର୍ଚ୍ଚ ଦିଆ ନ ଯାଇ ଚଳଚିତ୍ର ସୁନାମ ଅର୍ଜନ କଲେ ତାଙ୍କ ପାଖକୁ ପାରିଶ୍ରମିକ ପଠାଇଦେବାକୁ କୁହାଯାଇଥିଲା ।

ଚଳଚିତ୍ର ପ୍ରଯୋଜନା କ୍ଷେତ୍ରରେ ଘଟୁଥିବା ପ୍ରକୃତ ଘଟଣାକୁ ନିଛକ ପରିପାଟୀରେ ଚିତ୍ରଣ କରି ଲେଖକ ଜନତାଙ୍କ ନିକଟରେ ଚଳଚିତ୍ର ପ୍ରଯୋଜକଙ୍କ ପ୍ରକୃତ ସ୍ୱରୂପର ପରିଚୟ କରାଇ ଦେଇଛନ୍ତି । 'ବହୁରୂପୀ' ବିଶ୍ୱଜିତ୍‌ଙ୍କର ଆଉ ଏକ ଗଳ୍ପଧର୍ମୀ ରଚନା । ସଂପ୍ରତି ମଣିଷ କିପରି ମିଥ୍ୟାର ଆଶ୍ରୟ ନେଇ ଅନ୍ୟକୁ ପ୍ରତାରିତ କରିଚାଲିଛି ତାର ଏକ ନିଛକ ଦୃଷ୍ଟାନ୍ତର ଅବତାରଣା କରିଛନ୍ତି 'ବହୁରୂପୀ'ର ପ୍ରକାଶ ମିଶ୍ରଙ୍କ ଚରିତ୍ରରେ ।

'ପ୍ରେମ' ବିଶ୍ୱଜିତ୍‌ଙ୍କର ଆଉ ଏକ ସାମାଜିକ ଚିତ୍ର ବହନ କରିଥିବା କ୍ଷୁଦ୍ରଗଳ୍ପ । ପ୍ରେମ ନିକଟରେ ମଣିଷ କିପରି ନିଜର ଆଭିଜାତ୍ୟ, ପ୍ରତିପତ୍ତିକୁ ପଛକରି ଦେଇପାରେ ତାହାର ନିଛକ ଦୃଷ୍ଟାନ୍ତ 'ପ୍ରେମ' ଗଳ୍ପରୁ ପ୍ରତିପାଦିତ ହୁଏ । ମିଶ୍ରବାବୁଙ୍କ କନିଷ୍ଠା କନ୍ୟା ମିକି କିପରି ଚାଳିଆ ଘରେ ସ୍କୁଟର ମରାମତି କରୁଥିବା ମଣ୍ଟୁଙ୍କୁ ପରିବାରବର୍ଗଙ୍କ ଅଜ୍ଞାତରେ ବିବାହ କଲା ଏବଂ ଶେଷରେ ଦୁଇମାସ ନ ଯାଉଣୁ ଦୁରାବସ୍ଥାରେ ପଡ଼ି ଆସି ନିଜ ଜନ୍ମିତ ପିତାଙ୍କ ନିକଟରେ ହାତ ପାତିଥିଲା, ତାର ଏକ ଜୀବନ୍ତ ଚିତ୍ର ଚିତ୍ରାୟିତ ହୋଇଅଛି ।

ଯୌତୁକ ସମାଜର ଏକ ବ୍ୟାଧି । ଏହି ବ୍ୟାଧିର ବ୍ୟବଚ୍ଛେଦ ନିମନ୍ତେ ଯେତେ ସରକାରୀ କଟକଣା ହେଲେ ମଧ୍ୟ ତାହାର ମୂଳୋତ୍ପାଟନ ହେଉନାହିଁ । ସେହି ଯୌତୁକ ପ୍ରସଙ୍ଗରେ ବିଶ୍ୱଜିତଙ୍କର ଏକ ଗଳ୍ପ ରଚନା. ତାଙ୍କ 'ଭିନ୍ନସ୍ୱର' ଗ୍ରନ୍ଥରେ 'ବାନାମ୍ବରଙ୍କ ଆବିଷ୍କାର'ରେ ବର୍ଣ୍ଣିତ ହୋଇଅଛି । କବି ଓ ଲେଖକ ସୁଦର୍ଶନ ଯୌତୁକ ନେବେ ନାହିଁ ବୋଲି ଘୋଷଣାକରି ବାନାମ୍ବର ବାବୁଙ୍କୁ ଗୋଟିଏ ଘର ତୋଳିଦେବାର ଯୌତୁକ ଦାବି କରନ୍ତେ ବାନାମ୍ବର ବାବୁ ବିସ୍ମିତ ହୋଇ ଉଠିଛନ୍ତି । ବାନାମ୍ବର ବାବୁଙ୍କ ପରି ଭଦ୍ର ଖୋଳପା ତଳେ ଛଦ୍ମ ମୁଖା ପିନ୍ଧାଙ୍କ କୁଟିଳତା ଧରାପଡ଼ିଯାଇଛି ।

'ବୈରାଗୀ' ବିଶ୍ୱଜିତ୍ ଦାସଙ୍କର ଏକ ଚମତ୍କାର ଗଳ୍ପଧର୍ମୀ ସ୍ୱଚ୍ଛ ରଚନା । ମଣିଷ

କିପରି ଅର୍ଥ ଓ ସିଂହାସନର ସ୍ୱପ୍ନ ଦେଖୁଥାଏ ଏବଂ ସେହି ସ୍ୱପ୍ନକୁ ସାକାର କରିବା ନିମନ୍ତେ ମଣିଷକୁ କିପରି ନିଜର ମାୟାର ଖୋଳପା ବାରମ୍ବାର ବଦଳାଇବାକୁ ପଡ଼େ, ତାର ଏକ ନିଚ୍ଛକ ଚିତ୍ର ଅଙ୍କନ କରିଛନ୍ତି ବିଶ୍ୱଜିତ୍ 'ବୈରାଗୀ'ରେ ବିପ୍ର ଚରଣଙ୍କର ଚରିତ୍ର ମାଧ୍ୟମରେ ।

ସ୍ପୃଶ୍ୟ ଅସ୍ପୃଶ୍ୟର ଭେଦାଭେଦ ବିରୁଦ୍ଧରେ ସ୍ୱର ଉତ୍ତୋଳନକରି ବିଶ୍ୱଜିତ୍ ରଚନା କରିଛନ୍ତି ଲଘୁ ଗଳ୍ପଧର୍ମୀ ରଚନାଟିଏ – 'ସୁଚରିତା' । ପ୍ରେମ ନିକଟରେ ସୁନ୍ଦର ଅସୁନ୍ଦର, କଳା ଗୋରା, ଧନୀ ନିର୍ଦ୍ଧନ ଯେ ମୂଲ୍ୟହୀନ ତାହା ସେ ପ୍ରମାଣ କରିଛନ୍ତି ଏହି 'ସୁଚରିତା' ଶୀର୍ଷକ ସ୍ତମ୍ଭ ରଚନାଟିରେ ।

ଘଟଣାଚକ୍ରରେ 'ଅଭିଜିତ୍' ପରି ଜଣେ ଉଦୀୟମାନ ଯୁବକର ଉଦ୍‌ଭ୍ରାନ୍ତ ଜୀବନଚର୍ଯ୍ୟା ଏବଂ 'ବଣଭୋଜି'ରେ ତା'ର ପରଲୋକ ଗମନର ଦୁର୍ଯୋଗ ଏକ କାରୁଣ୍ୟର ଉତ୍ସ ସୃଷ୍ଟି କରିଛି, ଯହିଁରେ ଅଭିଜିତ୍‌ଙ୍କ ପିତା ଅଶୋକବାବୁ ଓ ମାତା ସାନ୍ତ୍ୱନା ଦେବୀ ଶୋକ ଜର୍ଜରିତ ହୋଇପଡ଼ିଛନ୍ତି । ଏପରି ହୃଦୟ ବିଦାରକ କାହାଣୀ 'ଚକ୍ର' ଶୀର୍ଷକ ରଚନାରେ ବିଶ୍ୱଜିତ୍ ଯଥାରୀତିରେ ଅବତାରଣା କରିଅଛନ୍ତି ।

କୌଣସି ରେଳଯାତ୍ରା ସମୟରେ ଯୁବକ – ସୁଶାନ୍ତ ଓ ଜନୈକା ତରୁଣୀ ନମିତାଙ୍କର ଏକା ବର୍ଥରେ ସାକ୍ଷାତ ଓ କଥାବାର୍ତ୍ତା । କଥାବାର୍ତ୍ତାରୁ ରୋମାଣ୍ଟିକ୍ ଆବେଗର ଉଦ୍ରେକ । ସେହି ଆବେଗରେ ସମ୍ପର୍କ ନିକଟତର ହେବାର ସୂଚନା । ପ୍ରେମ ବଳବତ୍ତର ହୁଏ ତ୍ୟାଗରେ । ନମିତାଙ୍କ ପାଇଁ ଜଳଯୋଗ ଠାରୁ ଆରମ୍ଭ କରି ରାତ୍ରଭୋଜନ ପର୍ଯ୍ୟନ୍ତ ସମସ୍ତ ଖର୍ଚ୍ଚ ଯୋଗାଇ ସୁଶାନ୍ତ ନିଜର ଶେଷ ସମ୍ବଳର ଶେଷ ଯାଏ ଖର୍ଚ୍ଚ ସାରି ଦେଇଛନ୍ତି । ଯେତେ ଯାହା ହେଲେବି ରେଳଯାତ୍ରୀ ମାତ୍ର କିଛି ନିର୍ଦ୍ଦିଷ୍ଟ ସମୟର ସାଥୀ ମାତ୍ର । ତେଣୁ ଏତେ ସବୁ ପରେ ବି ନମିତା ତା'ର ଇପ୍‌ସିତ ଷ୍ଟେସନ୍‌ରେ ଟ୍ରେନ୍‌ରୁ ଓହ୍ଲାଇଯିବା ପରେ ସୁଶାନ୍ତ ଯେଉଁ ଶୂନ୍ୟତା ଅନୁଭବ କରିଛି ତାହା ତାଙ୍କ ପ୍ରେମର ଉଦ୍‌ବେଳନକୁ ଧରାଶାୟୀ କରିଦେଇଛି । ଏଭଳି ଏକ ରୋମାଣ୍ଟିକ୍ ଚେତନାର କାହାଣୀ ଚିତ୍ରାୟିତ ହୋଇଛି ବିଶ୍ୱଜିତ୍‌ଙ୍କ କ୍ଷୁଦ୍ରଗଳ୍ପ ଧର୍ମୀ ରଚନା 'କିଞ୍ଚିତ୍ ମଳୟରେ' ଅତ୍ୟନ୍ତ କମନୀୟ ପରିପାଟୀରେ ।

### ସ୍ମୃତି ଅନୁଭୂତି ସମ୍ବଳିତ

ବିଶ୍ୱଜିତ୍ ଦାସଙ୍କ ସ୍ମୃତି ଓ ଅନୁଭୂତି ସମ୍ବଳିତ କେତେକ ସ୍ତମ୍ଭ ରଚନା ମଧ୍ୟରେ 'କଖାରୁଫୁଲ' ଅନ୍ୟତମ । ବି.ଏ ପାସ୍ କରି ଏମ୍.ଏରେ ନାମ ଲେଖାଇ ଅର୍ଥାଭାବରୁ ପାଠ ଛାଡ଼ିଦେଇଥିବା ଯୁବକ କିପରି ସହରର ରାସ୍ତାକଡ଼ରେ କଖାରୁଫୁଲ ବିକ୍ରୟ କରି ନିଜର ଗୁଜୁରାଣ ମେଣ୍ଟାଇଛି ଏବଂ ଚାକିରିଟିଏ କରାଇଦେବା ପାଇଁ ଅଭୟ ଆଶାରେ ପ୍ରତିଥର

ଦୁଇବିଡ଼ା କଖାରୁଫୁଲ ଅଧିକା ଦେଇ ଚାକିରି ପାଇବାର ଆଶା ପୋଷଣ କରି ରହିଛି, ତା'ର ଏକ ନିଛକ ଚିତ୍ର ଅଙ୍କିତ ହୋଇଛି ବିଶ୍ୱଜିତ୍‌ଙ୍କ 'କଖାରୁଫୁଲ' ସ୍ତମ୍ଭ ରଚନାରେ ।

'ତତ୍ତ୍ୱ' ଶୀର୍ଷକ ରଚନାରେ ତତ୍ତ୍ୱଦର୍ଶୀ ଶିକ୍ଷକ ବୃଦ୍ଧ ବାସୁଦେବ ଆଚାର୍ଯ୍ୟ ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି କିପରି ଉଦ୍ଧତ ବିଶୃଙ୍ଖଳ ଯୁବକମାନଙ୍କ ଦ୍ୱାରା ଶରବ୍ୟ ହୋଇଛନ୍ତି ତାର ଏକ ସଜୀବ ଚିତ୍ର ଅଙ୍କିତ ହୋଇଅଛି ।

**'ବିଦେଶିନୀ'** ବିଶ୍ୱଜିତ୍‌ଙ୍କର ଏକ ଚମତ୍କାର ସ୍ମୃତି ସମ୍ବଳିତ ସୃଷ୍ଟି । ଏକଦା ଦୁଇଜଣ ବିଦେଶିନୀ ଭୁବନେଶ୍ୱରସ୍ଥ ସୂଚନା ଭବନରେ ଗାନ୍ଧିଜୀଙ୍କ ଉପରେ ପ୍ରସ୍ତୁତ ଏକ ଆଲୋକ ଚିତ୍ର ଦେଖୁଥିବାବେଳେ ତାଙ୍କ ପାର୍ଶ୍ୱରେ ତିନିଜଣ ଉଚ୍ଛୃଙ୍ଖଳ ଯୁବକ ସେହି ବିଦେଶିନୀମାନଙ୍କୁ ନାନାଦି ଅଶ୍ଳୀଳ ମନ୍ତବ୍ୟ ପ୍ରଦାନ କରି ଚାଲିଥିଲେ । ଏହା ବିଶ୍ୱଜିତଙ୍କ ପକ୍ଷରେ ଅତ୍ୟନ୍ତ ଅସହ୍ୟ ହେଉଥିଲେ ମଧ୍ୟ ବାଧହୋଇ ନିଜକୁ ଏକ ନୀରବିତ ବ୍ୟବଧାନରେ ରଖିଥିଲେ । କିଛି ସମୟପରେ ବିଦେଶିନୀମାନେ ପ୍ରେକ୍ଷାଳୟ ବାହାରକୁ ଆସିଲେ । ତାଙ୍କ ପଛରେ ସେ ଯୁବକମାନେ ବି ଆସିଲେ । ବାହାରେ ଲେଖାଥିବା ଗୋପବନ୍ଧୁଙ୍କ କାଳଜୟୀ କବିତା ପଂକ୍ତି ସ୍ପଷ୍ଟ ଭାବରେ ପଢ଼ିଦେଲେ । ବିଦେଶିନୀଙ୍କ ଓଡ଼ିଆ ପଢ଼ା ଦେଖି ସେ ଯୁବକମାନେ ଅନ୍ତର୍ହିତ ହୋଇଯାଇଥିଲେ ।

'ବନ୍ଦନା' ବିଶ୍ୱଜିତ୍ ଦାସଙ୍କର ଅନ୍ୟଏକ ଆବେଗମୟ ରଚନା । ବନ୍ଦନା ଲେଖକଙ୍କର ଉପରିସ୍ଥ କର୍ମଚାରୀ ଗୌରାଙ୍ଗ ବାବୁଙ୍କ ଜ୍ୟେଷ୍ଠାକନ୍ୟା । ଗୌରାଙ୍ଗବାବୁ ତିନୋଟି କନ୍ୟା ଓ ଗୋଟିଏ ପୁତ୍ରର ଜନକ । ସ୍ୱଳ୍ପ ଆୟ ମଧ୍ୟରେ ପୁଅଝିଅମାନଙ୍କୁ ଉଚ୍ଚଶିକ୍ଷା ଦେଇଥିଲେ ମଧ୍ୟ ଝିଅମାନେ ବିଶେଷ ସୁନ୍ଦରୀ ହୋଇନଥିବାରୁ ବିଶେଷ ଯୌତୁକ ଦେବାର କ୍ଷମତା ନ ଥିବାରୁ ବିବାହ ଦେବା ଗୌରାଙ୍ଗବାବୁଙ୍କ ପକ୍ଷେ କଷ୍ଟସାଧ୍ୟ ହେଲା । ବନ୍ଦନାର ତଳ ଭଉଣୀ ଅଞ୍ଜନା ଓ ଚନ୍ଦନା ନିଜ ଇଚ୍ଛାରେ ବିବାହ କରିଗଲେ । ଏହି ସବୁ ଦୁଃସହ କାର୍ଯ୍ୟାବଳୀ ମଧ୍ୟରେ ଗୌରାଙ୍ଗବାବୁଙ୍କ ପତ୍ନୀ କନକଲତା ମଧ୍ୟ ହୃଦ୍‌ଘାତରେ ପରଲୋକ ଗମନ କଲେ । ବନ୍ଦନା ପାଇଁ ଚାକିରିଟିଏ କରାଇଦେବାକୁ ଲେଖକଙ୍କୁ ଅନୁରୋଧ କଲେ ଗୌରାଙ୍ଗବାବୁ । ଲେଖକ ସେ ଇଣ୍ଟରଭ୍ୟୁ ବୋର୍ଡର ଜଣେ ପ୍ରଭାବଶାଳୀ ସଦସ୍ୟ ଥାଇ ମଧ୍ୟ ଚାକିରିଟି କରାଇଦେଇ ପାରିଲେ ନାହିଁ । ତା'ପରେ ବନ୍ଦନା ଇଣ୍ଟରଭ୍ୟୁ ବୋର୍ଡର ସଦସ୍ୟମାନେ ଷାଠିଏ ହଜାର ଟଙ୍କା ଲେଖାଏଁ ଲାଞ୍ଚ ନେଇଥିବାର ଅପପ୍ରଚାର କରି ନିଜେ ମାନସିକ ଯନ୍ତ୍ରଣାରେ ଦଗ୍ଧିଭୂତ ହେବା ସଙ୍ଗେସଙ୍ଗେ ସେ ଆଉ ଲେଖକଙ୍କ ସାମ୍ନାକୁ ଆସିପାରି ନ ଥିଲା । **'ପ୍ରାରବ୍ଧ'** ମଧ୍ୟ 'ବନ୍ଦନା' ପରି ଅନ୍ୟ ଏକ ରଚନା । ରଚନାର ମୁଖ୍ୟ ନାୟକ ସଂଜୟ ଜୀବନର ସାୟାହ୍ନରେ ନାନାଦି ସମସ୍ୟା ଜର୍ଜରିତ ହୋଇ ଏକ ବାବାଙ୍କ ଶରଣାପନ୍ନ ହୁଅନ୍ତେ – ପ୍ରାରବ୍ଧ

କର୍ମରୁ ଏପ୍ରକାର ସଙ୍କଟ ଉପୁଜିଛି ବୋଲି ବାବା ମତ ପ୍ରଦାନ କରନ୍ତେ ସଂଜୟ ଅତ୍ୟନ୍ତ ଅତିଷ୍ଠ ହୋଇ ପଡ଼ିଥିଲେ ।

'ଗତିମାଷ୍ଟ୍ରେଙ୍କ ଛତୁଚାଷ' ଶୀର୍ଷକ ରଚନାଟି ନିଜ କଳ୍ପିତ କିମ୍ବା ବାସ୍ତବ ରଚନା ନୁହେଁ ବୋଲି ନିଜେ ବିଶ୍ୱଜିତ୍ ଦାସ ସ୍ୱୀକାର କରିଛନ୍ତି । ଜଣେ ବନ୍ଧୁଙ୍କ ଠାରୁ ଶୁଣିଥିବା ଏକ ହାସ୍ୟରସାତ୍ମକ କାହାଣୀ ହିଁ ରଚନାଟିର ମୁଖ୍ୟ ପ୍ରତିପାଦ୍ୟ କଥାବସ୍ତୁ । ସାଧାରଣ ଭାବେ ଆମେ ଛତୁକୁ ଯେପରି ଅବସ୍ଥାରେ ଦେଖିବାକୁ ପାଆନ୍ତି, ଏଠାରେ କିନ୍ତୁ ଛତୁକୁ ଏକ ମହାଦ୍ରୁମ ଭାବେ ଚିତ୍ରଣ କରାଯାଇଛି ।

'ନିଜ ପ୍ରତିନିଧିଙ୍କଠାରୁ' ନାମରେ ବିଶ୍ୱଜିତ୍ ଦାସଙ୍କର ସଫଳ ନାଟକଟିଏ ଥିଲେ ମଧ୍ୟ ସେ 'ନିଜ ପ୍ରତିନିଧିଙ୍କଠାରୁ' ଶିରୋନାମରେ ଏକ ସ୍ତମ୍ଭ ରଚନା କରିଛନ୍ତି । ଏହି ସ୍ତମ୍ଭ ରଚନାଟି ମଧ୍ୟ କାହାଣୀ ଧର୍ମୀ ତାଙ୍କର ଏକ ଅନୁଭୂତିର ଅଭିଳିପି । ରଂଜିତ୍ ଲେଖକଙ୍କର ଅନ୍ୟତମ ସାମ୍ବାଦିକ ବନ୍ଧୁ, ଯେ କି ସମାଜକୁ ସୁଧାରିବା ନିମନ୍ତେ ଅପ୍ରିୟ ସତ୍ୟକଥା ଲେଖିବାକୁ ତିଳେମାତ୍ର ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । 'ଦୈନିକ ଜାଗରଣ'ରେ ସେ ପ୍ରତିନିଧି ଥିବାବେଳେ କେତେକ ସାମ୍ବାଦିକ ଏକ ସାରକାରଖାନାର ମିଥ୍ୟା ଲୋକପ୍ରିୟତା ସଂପର୍କରେ ସମ୍ବାଦ ପ୍ରକାଶ କରି ସାରକାରଖାନାର ବିଜ୍ଞାପନ ଛପାଇ 'ଦୈନିକ ଜାଗରଣ'ର ପାଣ୍ଠି ବୃଦ୍ଧିରେ ସହାୟକ ହେଉଛନ୍ତି । କିନ୍ତୁ ପ୍ରକୃତରେ ସେ ସାରକାରଖାନା କମ୍ପାନୀ କୌଣସି ଅଗ୍ରଗତି ନ କରି ସରକାରୀ ଜମିର ଅପବ୍ୟବହାର କରିବା ସହିତ ଋଣ ଅର୍ଥ ଆତ୍ମସାତ୍ କରିଚାଲିଛି । ଏହି ପ୍ରକୃତ ସତ୍ୟଟିକୁ ସାମ୍ବାଦିକ ରଞ୍ଜିତ୍ 'ଦୈନିକ ଜାଗରଣ'ରେ ପ୍ରକାଶ କରିଦେବା ପରେ 'ଦୈନିକ ଜାଗରଣ'ର ପ୍ରତିଷ୍ଠାତା ରାଜ୍ୟର ଜଣେ ମନ୍ତ୍ରୀ ରଞ୍ଜିତ୍‌ଙ୍କ ଉପରେ କ୍ରୋଧ ପ୍ରକାଶ କରି ତାଙ୍କୁ ଡେସ୍କରେ ବସି କେବଳ ଅନୁବାଦ ବା ଫିଚର ଲେଖିବାକୁ ନିର୍ଦ୍ଦେଶ ଦେଲେ । ଏହା ଫଳରେ ସଚ୍ଚୋଟ ସ୍ୱାଭିମାନୀ ସାମ୍ବାଦିକ ଆଘାତପ୍ରାପ୍ତ ହୋଇ 'ଦୈନିକ ଜାଗରଣ'ରୁ ଇସ୍ତଫା ଦେଇ ଆଉ ଏକ ସମ୍ବାଦପତ୍ର 'ଦୈନିକ ଅଗ୍ରଦୂତ'ରେ ନିଜ ପ୍ରତିନିଧି ଭାବେ ଯୋଗଦେଲେ । ଏଠାରେ ମଧ୍ୟ ତାଙ୍କୁ ଅନୁରୂପ ଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । 'ଦୈନିକ ଅଗ୍ରଦୂତ'ରେ ଚୋରାମଦ କାରବାରରେ ଲିପ୍ତ କେତେକ ପ୍ରଭାବଶାଳୀ ଅପରାଧୀଙ୍କ ମୁଖା ଖୋଲିଦେବା ପରେ 'ଦୈନିକ ଅଗ୍ରଦୂତ'ର ମାଲିକ ରଞ୍ଜିତଙ୍କ ଉପରେ କ୍ଷୁବ୍ଧହୋଇ ତାଙ୍କଠାରୁ ରିପୋର୍ଟର୍ ଦାୟିତ୍ୱ କାଢ଼ିନେଇ ତାଙ୍କୁ କେବଳ ଫିଚର୍ ଲେଖିବାକୁ ନିର୍ଦ୍ଦେଶ ଦେଲେ ।

ଏଭଳି ଏକ ସ୍ତମ୍ଭ ରଚନାକରି ବିଶ୍ୱଜିତ୍ ଯେ କେବଳ ପାଠକଙ୍କୁ କଳ୍ପିତ ଅନୁଭୂତିର କାହାଣୀ ଶୁଣାଇଛନ୍ତି ତା'ନୁହେଁ, ବରଂ ସାମ୍ବାଦିକର ଗୁରୁତ୍ୱ ଓ ସମାଜଗଠନର ମହତ୍ତ୍ୱ ସହିତ ଦୁର୍ନୀତିଗ୍ରସ୍ତ ମନ୍ତ୍ରୀ ଓ ସମ୍ବାଦପତ୍ର ମାଲିକ ତଥା କେତେକ ହୀନମତି ସାମ୍ବାଦିକଙ୍କ ଦୁର୍ନୀତି

ଓ ଭ୍ରଷ୍ଟାଚାରର ପ୍ରକୃତ ମୁଖା ଖୋଲି ଏକ ମହତ୍ତର କାର୍ଯ୍ୟ ସଂପାଦନ କରିଅଛନ୍ତି ।

'ମେଟାମରଫସିସ୍' ରଚନାଟି ଲେଖକଙ୍କ ସ୍ମୃତି ଅନୁଭୂତିର ଅନ୍ୟ ଏକ ଅଭିବ୍ୟକ୍ତି । ଛାତ୍ରନେତା ସୁଧାଂଶୁ ପଟ୍ଟନାୟକ କିପରି ପରେ ସରକାରୀ କର୍ମଚାରୀ ଭାବରେ ନିଜର ସ୍ୱାଧୀନତାକୁ ଜଳାଞ୍ଜଳି ଦେଇ ଏକ ଗୋଲାମୀ ଜୀବନ ବିତାଇ ବିତସ୍ପୃହ ହୋଇଛନ୍ତି, ତାହାର ଏକ ସୁନ୍ଦର ବର୍ଣ୍ଣନା 'ମେଟାମରଫସିସ୍' ରଚନାରେ ପରିବେଷିତ ହୋଇଅଛି ।

**'ଅଭିଶପ୍ତ ବିଗ୍ରହ'** ବିଶ୍ୱଜିତ୍‌ଙ୍କର ଅନୁଭୂତି ସମ୍ବଳିତ ଗଦ୍ୟ ରଚନାଟିଏ ପରି ମନେ ହେଉଥିଲେ ମଧ୍ୟ ଏହାର କାହାଣୀ ଆବେଦନ ଅତ୍ୟନ୍ତ ଚମତ୍କାର ଏବଂ ଆବେଗମୟ । ଭୁବନେଶ୍ୱରସ୍ଥ ଶହିଦନଗରରେ ବିଶ୍ୱଜିତ୍ ଦାସଙ୍କ ବାସଭବନ ଅବସ୍ଥିତ । ତାଙ୍କର ଘର ସମ୍ମୁଖରେ ଶିଶୁଉଦ୍ୟାନ ନିମନ୍ତେ ଥିବା ସ୍ଥାନରେ ଗଢ଼ିଉଠିଥିବା ବସ୍ତି ଏବଂ ପରବର୍ତ୍ତୀ ସମୟରେ ତା'ର ଉଚ୍ଛେଦକୁ ନେଇ କାହାଣୀଟି ଗଢ଼ି ଉଠିଥିଲେ ମଧ୍ୟ ସେଠାରେ ଥିବା ବିଶାଳ ବରବୃକ୍ଷ ଏବଂ ପ୍ରସ୍ତରର ମହାଦେବ ବିଗ୍ରହ କିପରି ମହାବାତ୍ୟାରେ ଅସ୍ତିତ୍ୱ ହରାଇଛନ୍ତି, ତା'ର ଏକ ସଜୀବ ଚିତ୍ର ରୂପାୟିତ ହୋଇଛି 'ଅଭିଶପ୍ତ ବିଗ୍ରହ'ରେ ।

**'ଶେଷ ସୈନିକ'** ବିଶ୍ୱଜିତ୍‌ଙ୍କର ଏକ ପ୍ରଭାବଶାଳୀ ଆଦର୍ଶ ବାର୍ତ୍ତାବହର ରଚନା । ଅର୍ଥବଳ ଓ ବାହୁବଳର ପ୍ରଭାବ କିପରି ପ୍ରକୃତ ସଚ୍ଚୋଟ, ସାଧୁ ଜନସେବୀର ସାଧନା ଓ ସେବାକୁ ପରାହତ କରିପାରେ ସାମ୍ପ୍ରତିକ ସମାଜରେ, ତା'ର ଏକ ନିଛକ ଚିତ୍ର ଅଙ୍କନ କରିଛନ୍ତି ବିଶ୍ୱଜିତ୍ 'ଶେଷ ସୈନିକ'ରେ ।

**'କୋଚ୍ ନମ୍ବର ୫୮୦୭'** – ବିଶ୍ୱଜିତ୍‌ଙ୍କର ଆଉ ଏକ ଅନୁଭୂତି ମୂଳକ ରଚନା । ବିଶ୍ୱଜିତ୍ ନିଜେ ଜଣେ ଧୂରୀଣ ନାଟ୍ୟକାର । ଏହି ରଚନାଟି ବେଶ୍ ନାଟକୀୟ ଭାବରେ ରଚିତ ହୋଇଛି । ନିଜର ଅନୁଭୂତି ସହିତ କଳ୍ପନାର ମିଶ୍ରିତରାଗ ରଚନାଟିକୁ ଅତ୍ୟନ୍ତ ଆବେଗମୟ କରି ଗଢ଼ିତୋଳିଛି । ଏକଦା ହାଓଡ଼ା ଷ୍ଟେସନ୍‌ରେ ଲେଖକ ଭୁବନେଶ୍ୱର ଆସିବାକୁ ପ୍ରତୀକ୍ଷାରତ ଥାଇ କିପରି ଏକ ସଙ୍କଟରେ ପଡ଼ି ଉଦ୍ଭ୍ରାନ୍ତ ଓ ବିପର୍ଯ୍ୟସ୍ତ ହୋଇଥିଲେ ତାହାର ଏକ ନାଟକୀୟ ବର୍ଣ୍ଣନା ଏହି ଆଲୋଚ୍ୟ ରଚନାଟିରେ ଚିତ୍ରାୟିତ ହୋଇଅଛି ।

**'ଅନ୍ଧକାରର ସ୍ୱର'** ବିଶ୍ୱଜିତ୍ ଦାସଙ୍କର ଏକ ସତ୍ୟଘଟଣା ଉପରେ ଆଧାରିତ ଏକ ରଚନା । ଜଣେ ସାହସୀ ଭଦ୍ରବ୍ୟକ୍ତି ନିଜ ପଡ଼ୋଶୀଙ୍କ କନ୍ୟା ଓ ଜାମାତାଙ୍କୁ ଆତତାୟୀ କବଳରୁ ରକ୍ଷାକରିବାକୁ ଯାଇ କିପରି ଦୁଷ୍ଟ ଆତତାୟୀଙ୍କ ଭୁଜାଲୀର ତୀକ୍ଷ୍ଣ ଧାରରେ ଜୀବନ ଦେଲେ ଏବଂ ଆତତାୟୀ ବିଶିଷ୍ଟ ନେତୃସ୍ଥାନୀୟ ଲୋକଙ୍କ ସଂପର୍କୀୟ ହୋଇଥିବାରୁ କିପରି ପୋଲିସଦ୍ୱାରା ଗିରଫ୍ ହେଲେ ନାହିଁ – ତାହା ବିଶ୍ୱଜିତ୍‌ଙ୍କ ଲେଖନୀରେ ବେଶ୍ ମନୋଜ୍ଞ

ପରିପାଟୀରେ ଅଙ୍କିତ ହୋଇଅଛି ।

## ବ୍ୟଙ୍ଗଧର୍ମୀ ରଚନା

ବିଶ୍ୱଜିତ୍ ଦାସଙ୍କ 'ଭିନ୍ନସ୍ୱର'ରେ ପତ୍ରସ୍ଥ ସ୍ତମ୍ଭ ରଚନା ଗୁଡ଼ିକ ମଧ୍ୟରେ କେତୋଟି ବ୍ୟଙ୍ଗଧର୍ମୀ ରଚନା ସ୍ଥାନିତ ହୋଇଛି । ତନ୍ମଧ୍ୟରେ 'ଲବି' ଶୀର୍ଷକ ରଚନାଟି ଅନ୍ୟତମ । ସଂପ୍ରତି ସମାଜରେ କବି, ଲେଖକ, କଳାକାର, ଚିତ୍ରକର ଆଦି ପ୍ରତିଭାଦୀପ୍ତ ସ୍ରଷ୍ଟାମାନେ ପୁରସ୍କାରଟିଏ ହାତେଇବା ପାଇଁ କି ପ୍ରକାର ଲବି କରୁଛନ୍ତି, କିପ୍ରକାର ହୀନ ଚକ୍ରାନ୍ତ କରୁଛନ୍ତି, ତାର ଏକ ଜୀବନ୍ତ ଚିତ୍ର ବିଶ୍ୱଜିତ୍ ବର୍ଣ୍ଣନା କରିଛନ୍ତି । 'ଲବି' ଶୀର୍ଷକ ସ୍ତମ୍ଭ ରଚନାରେ ସାହିତ୍ୟ ଏକାଡେମୀ ପୁରସ୍କାରର ବିଚାରକ ମଣ୍ଡଳୀରେ ଥିବା ଅବସରପ୍ରାପ୍ତ ବିଷ୍ଣୁବାବୁଙ୍କୁ ଧରି ଲବି କରିବାକୁ ତାଙ୍କୁ ସିବିଆଇର ଆଇ.ଜି କିପରି ତାଙ୍କ ଘରକୁ ଆସି ତାକୁ ପୁରସ୍କାର ଦେବାକୁ ଅନୁରୋଧ ଜଣାଇଛନ୍ତି – ତାହାର ଏକ ବ୍ୟଙ୍ଗାତ୍ମକ ବର୍ଣ୍ଣନା ବର୍ଣ୍ଣିତ ହୋଇଛି 'ଲବି' ଶୀର୍ଷକ ରଚନାଟିରେ ।

'ବିଧିର ବିଧାନ' ବିଶ୍ୱଜିତ୍‌ଙ୍କର ଅନ୍ୟତମ ବ୍ୟଙ୍ଗଧର୍ମୀ ରଚନା । ଶବଦାହ ନିମନ୍ତେ କ୍ରମଶଃ କାଠର ଅଭାବ ହେତୁ ସରକାରୀ ସ୍ତରରେ ଶ୍ମଶାନରେ ବୈଦ୍ୟୁତିକ ଚୁଲାର ବ୍ୟବହାର କରାଯିବାର ଯୋଜନା ହେଲା । ଏହି ବୈଦ୍ୟୁତିକ ଚୁଲାରେ ଶବଦାହର ଉଦ୍‌ଘାଟନ ଉତ୍ସବ ଏକ ମନ୍ତ୍ରୀଙ୍କ ଦ୍ୱାରା କରାଯିବାର ସ୍ଥିର ହେଲା । କିନ୍ତୁ ନିର୍ଦ୍ଧାରିତ ଉତ୍ସବ ଦିନ କୌଣସି ଶବ ଆସିଲା ନାହିଁ । ମନ୍ତ୍ରୀ ଅପେକ୍ଷାକରି ରହିଛନ୍ତି । ବହୁ ବିଳମ୍ବିତ ପ୍ରହରରେ ଷ୍ଟେସନ୍ ନିକଟରେ ପଡ଼ିଥିବା ଏକ ଅଜଣା ଶବକୁ ଏକ ଟ୍ରଲିରେ ଅଣାଗଲା ଏବଂ ତା'ର ଶବଦାହକୁ ମନ୍ତ୍ରୀ ଉଦ୍‌ଘାଟନ କଲେ । ଉଦ୍‌ଘାଟନ ପରଠାରୁ ପ୍ରତିଦିନ ବହୁଶବ ସେ ଶ୍ମଶାନକୁ ଆସୁଥିଲେ ମଧ୍ୟ ବୈଦୁତିକ ଚୁଲାଦୁଇଟି ଉଦ୍‌ଘାଟନ ପରେ ପରେ ଅଚଳ ହୋଇଯାଇଥିଲା । ମଣିଷ ବଞ୍ଚିଥିଲା ବେଳେ ଅର୍ଥ ଓ କ୍ଷମତାକୁ ଜାବୁଡ଼ିଧରି ଯାବତୀୟ ଦୁର୍ନୀତି, ଭ୍ରଷ୍ଟାଚାର ତଥା ନାରକୀୟ କର୍ମକାଣ୍ଡ କରି ଘୃଣିତ ହେଉଥିବାବେଳେ, ନିଜର ଅର୍ଥବଳ ଓ ବାହୁବଳରେ ନିଜର ଶତ୍ରୁକୁ ବି ଆୟତ କରିପାରୁଥିବା ନଷ୍ଟ ଚରିତ୍ରର ବ୍ୟକ୍ତିର ମୃତ୍ୟୁ ପରେ କିପରି ଜୟଗାନ କରାଯାଇପାରେ, ତାହାର ଏକ ଦୃଷ୍ଟାନ୍ତ ସ୍ତମ୍ଭକାର ବିଶ୍ୱଜିତ୍ ଦାସ 'ମହାତ୍ମା' ରଚନାଟିରେ ନୟନବାବୁଙ୍କ ଚରିତ୍ର ମାଧ୍ୟମରେ ଅତ୍ୟନ୍ତ ନିଚ୍ଛକଭାବରେ ଅବତାରଣା କରିଅଛନ୍ତି ।

ବିଶ୍ୱଜିତ୍‌ଙ୍କର 'କାର୍' ଶୀର୍ଷକ ରଚନାଟି ସମାଜରେ ଘଟୁଥିବା ଲାଞ୍ଚ ତଥା ଦୁର୍ନୀତିଜନିତ ଏକ ବ୍ୟଙ୍ଗାତ୍ମକ ରଚନା । ଏତାଦୃଶ ରଚନା ମଧ୍ୟ ଏହାପୂର୍ବରୁ ଅନ୍ୟତ୍ର କ୍ଷୁଦ୍ରଗଳ୍ପ ଭାବରେ ଏବଂ ନାଟକ ଭାବରେ ରଚିତ ହୋଇଅଛି । ଦୁର୍ନୀତିଗ୍ରସ୍ତ ଲାଞ୍ଚଖୋର୍ ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବ ଲାଞ୍ଚ ଟଙ୍କାରେ ମୂଲ୍ୟବାନ କାର୍ ଚଢୁଥିବା ବେଳେ ସ୍ୱଚ୍ଛ ନିର୍ମଳ ଭାବମୂର୍ତ୍ତି

ସମ୍ପନ୍ନ ପଦାଧିକାରୀ ଅଗଣିବାକୁ ନିଜର କାର୍‌ଟିଏ ନକରିପାରି ମଧ ତିଳେହେଲେ ଦୁଃଖ ପ୍ରକାଶ କରିନାହାନ୍ତି । ଏହି ରଚନାଟି ମାଧମରେ ବିଶ୍ୱଜିତ୍ ଦାସ ନୀତି ଓ ଦୁର୍ନୀତିର ପ୍ରଭେଦ ମଧ୍ୟରେ ଏକ ମହାନ୍ ଆଦର୍ଶର ବାର୍ତ୍ତା ଦେଇଅଛନ୍ତି ।

**'ଡାକ୍ତର ସୁଦାମ ବେହେରାଙ୍କ ଦେବି'** ବିଶ୍ୱଜିତ୍‌ଙ୍କର ଅନ୍ୟ ଏକ ସମାଲୋଚନା ମୂଳକ ବ୍ୟଙ୍ଗାତ୍ମକ ରଚନା । ମନ୍ତ୍ରୀ ଓ ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବମାନେ କିପରି ସ୍ୱଚ୍ଛ, ନିର୍ମଳ ଭାବାପନ୍ନ ଜନସେବୀ ଡାକ୍ତରଙ୍କଠାରୁ ଲାଞ୍ଚ ନେବାକୁ ପଛାନ୍ତି ନାହିଁ, ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଇଅଛନ୍ତି । ଡାକ୍ତର ସୁଦାମ ବେହେରା କୋରାପୁଟ ପରି ଅଞ୍ଚଳକୁ ବଦଳି ହେବାକୁ ଚାହିଁଥିଲେବି ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବ ତାଙ୍କୁ ଲାଞ୍ଚରୁ ବଞ୍ଚିତ ନ କରି ଲକ୍ଷେଟଙ୍କା ବଦଳରେ ୪୦ ହଜାର ଟଙ୍କା ଧାର୍ଯ୍ୟ କରିଛନ୍ତି । ଏପରି ଏକ ବିଦ୍ରୂପାତ୍ମକ ରଚନା ମାଧ୍ୟମରେ ବିଶ୍ୱଜିତ୍ ଦାସ ସଂପ୍ରତି ମନ୍ତ୍ରୀମାନଙ୍କ ଦୁର୍ନୀତି ଓ ଲାଞ୍ଚଖୋର ମନୋବୃତ୍ତିର ନିଛକ ଚିତ୍ର ଅଙ୍କନ କରିପାରିଛନ୍ତି ।

ପର୍ଶୁରାମ ବାବୁଙ୍କ ପରି ଜନସେବୀଙ୍କ ବ୍ୟକ୍ତିତ୍ୱ ଅତ୍ୟନ୍ତ ଜୀବନ୍ତ ଭାବେ ଚିତ୍ରଣ କରାଯାଇଛି **'କଣେ ମନ୍ତ୍ରୀ ଥିଲେ'** ରଚନାଟିରେ । ପର୍ଶୁରାମ ବାବୁଙ୍କ ସାଧୁତା ଓ ସମାଜସେବାର ଗୁଣ ବର୍ଣ୍ଣନା ମଧ୍ୟରେ ଦୁର୍ନୀତିଖୋର ନେତା, ମନ୍ତ୍ରୀ, ଅଧିକାରୀ ଓ କର୍ମଚାରୀମାନଙ୍କ ଦୁର୍ନୀତି ଓ ଭ୍ରଷ୍ଟାଚାର ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଛି ।

**'ବରପ୍ରାପ୍ତି'**, 'ଭିନ୍ନସ୍ୱର' ଗ୍ରନ୍ଥ ଅନ୍ତର୍ଗତ ଏକ ଭିନ୍ନସ୍ୱାଦର ବ୍ୟଙ୍ଗଧର୍ମୀ ରଚନା । ସଂପ୍ରତି କିପରି ଧରାଧରି ଓ ଯୋଗାଡ଼ଯନ୍ତ କରି କବି ଲେଖକମାନେ ସମ୍ମାନ ଓ ପୁରସ୍କାର ପାଇ ଯାଉଛନ୍ତି, ତାହାର ଏକ ନିଛକ ଚିତ୍ର 'ବରପ୍ରାପ୍ତି' ରଚନାଟିରେ ଚିତ୍ରିତ ହୋଇଅଛି । କୁମୁଦ ରଂଜନଙ୍କ ପରି ଯୋଗ୍ୟ କବିଙ୍କୁ ଉପେକ୍ଷା କରି କରୁଣାସାଗରଙ୍କ ପରି ଲୋକ କିପରି ପୁରସ୍କାର ପାଇଯାଆନ୍ତି, ପୁରସ୍କାର ବା ସମ୍ମାନ ପାଇବା ନିମନ୍ତେ କବିଙ୍କୁ କିପରି ବାବାଙ୍କ ଆଶ୍ରୟ ନେବାକୁ ପଡ଼େ ତାର ଏକ ଦୃଷ୍ଟାନ୍ତ ରଚନାଟିରେ ବେଶ୍ ସଜୀବଭାବେ ବର୍ଣ୍ଣିତ ହୋଇଅଛି ।

ବିଶ୍ୱଜିତ୍ ଦାସ **'ଶେଷକୃତ୍ୟ'** ଶୀର୍ଷକ ଷ୍ଟମ୍ଭ ରଚନାଟିରେ ଅନ୍ଧବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ରଚନା ମଧ୍ୟରେ ଭିନ୍ନ ଭିନ୍ନ ମୋଡ଼ ବଦଳାଇ ରଚନାଟିକୁ ଚିତ୍ତସ୍ପର୍ଶୀ କରିପାରିଛନ୍ତି ।

ତଳେ ବସି ପତ୍ର ପକାଇ ପଙ୍ଗତରେ ଖାଇବା କିମ୍ବା ଚୌକୀ ଟେବୁଲ୍‌ରେ ବସି ଖାଇବାର ପରମ୍ପରା ଛାଡ଼ି ଏବେ ସହର ବଜାରମାନଙ୍କରେ 'ବଫେ' ପଦ୍ଧତିରେ ବାହାଘର

ଭୋକିଲିଖିଆର ବ୍ୟବସ୍ଥା ଚାଲିଛି । ଏ ବଫେ ବିରୁଦ୍ଧରେ ବିଶ୍ୱଜିତ୍‌ଙ୍କ 'ବଫେ' ଶୀର୍ଷକ ସ୍ତମ୍ଭ ରଚନାଟି ବେଶ୍ ବ୍ୟଙ୍ଗାତ୍ମକ ତଥା ମନଛୁଆଁ ହୋଇଅଛି ।

'ସୃଷ୍ଟିର ବଜାର' ବିଶ୍ୱଜିତ୍ ଦାସଙ୍କର ଏକ ସମାଲୋଚନା ମୂଳକ ବ୍ୟଙ୍ଗଧର୍ମୀ ରଚନା । ଜଣେ ସ୍ରଷ୍ଟା ତା'ର ସାଧନା ବଳରେ ଉନ୍ନତ ଓ ପ୍ରଭାବଶାଳୀ ସୃଷ୍ଟିମାନ ରଚନା କରିପାରେ । କିନ୍ତୁ ଆର୍ଥିକ ମାନଦଣ୍ଡରେ ତା'ର ନିଜ ସୃଷ୍ଟି ସମ୍ଭାରକୁ ବିଚାର କରି ଲେଖନୀ ଚାଳନା କରିବା ସ୍ପୃହଣୀୟ ନୁହେଁ । ଜଣେ ତଥାକଥିତ ଗୀତିକାର କିପରି ଅଧିକ ଅର୍ଥର ବିନିମୟରେ ଉନ୍ନତ ଗୀତ ଏବଂ କମ୍ ଅର୍ଥର ବିନିମୟରେ ନିକୃଷ୍ଟ ଗୀତ ରଚନା କରି ପ୍ରଦାନ କରୁଥିଲେ ତାହା ବର୍ଣ୍ଣନା କରି ଗୀତିକାରଙ୍କ ସାରସ୍ୱତ କାର୍ଯ୍ୟକୁ ଯଥାର୍ଥରେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ।

ଜଣେ ଏକନିଷ୍ଠ ସାରସ୍ୱତ ସାଧକ ନିଜ ସାଧନାର ସ୍ୱୀକୃତି ପାଇ ନ ଥିବାବେଳେ ତାଙ୍କଠାରୁ କମ୍ ଯୋଗ୍ୟତା ସମ୍ପନ୍ନ ଲେଖକ ପୁରସ୍କୃତ ହେଲେ ପ୍ରକୃତ ସାଧକଟି କିପରି ଆଘାତ ପାଏ, କିପରି ନିରୁତ୍ସାହିତ ହୋଇ ନିଜ ସାଧନାକୁ ତଥା ନିଜ ସୃଷ୍ଟିକୁ ଅସାର ମଣେ ତାହା ବେଶ୍ ସୁନ୍ଦରଭାବେ ଚିତ୍ରିତ ହୋଇଛି 'ନିତ୍ୟାନନ୍ଦଙ୍କ ସାଧନା'ରେ ।

ରାଜନୀତିର ଖେଳ ବଡ଼ ବିଚିତ୍ର । କିଏ କେତେବେଳେ ନିର୍ବାଚନରେ ବିଜୟ ହାସଲ କରେ ପୁଣି କେତେବେଳେ ସେହି ବ୍ୟକ୍ତି ପ୍ରଚଣ୍ଡ ଭାବରେ ପରାଜିତ ହୋଇ ଧରାଶାୟୀ ହୁଏ, ତାର କିଛି ଧରାବନ୍ଧା ନିୟମ ନଥାଏ । ସେହି ଚିରନ୍ତନ ସତ୍ୟଟି ବିଶ୍ୱଜିତ୍ ତାଙ୍କର ଅନ୍ୟଏକ ସ୍ତମ୍ଭ ରଚନା 'କିଏ ଜିତେ କିଏ ହାରେ'ରେ ଚିତ୍ରାୟିତ କରିଅଛନ୍ତି ।

'ଭିନ୍ନସ୍ୱର'ର ଶେଷ ରଚନା 'ଜାତକ' ନିଛକଭାବେ ଏକ ବ୍ୟଙ୍ଗଧର୍ମୀ ରଚନା ନ ହୋଇଥିଲେ ମଧ୍ୟ ଜଣେ ପ୍ରତିଷ୍ଠିତ କବି ପ୍ରତି ଏହା ଯେ ଏକ କଟାକ୍ଷ, ଏଥିରେ ସନ୍ଦେହ ନାହିଁ ।

ସାଧାରଣତଃ କବି ଲେଖକମାନେ ସମାଜର ନାନାଦି କୁସଂସ୍କାର, ଦୁର୍ନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଜନସାଧାରଣଙ୍କୁ ଦିଗ୍‌ଦର୍ଶନ ଦେଇଥାଆନ୍ତି । କିନ୍ତୁ ଜୟନ୍ତ ମହାନ୍ତି ପରି ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ଜଣେ କବି ଯେ ନିଜର ବୟସାଧିକ୍ୟ ଜ୍ୟେଷ୍ଠପୁତ୍ର ପାଇଁ ଏତେ ମାତ୍ରାରେ ଯୌତୁକ ଦାବୀ କରିପାରନ୍ତି, ଭାବିଲେ ବିସ୍ମୟ ଜାତହୁଏ । ବିଶ୍ୱଜିତ୍‌ଙ୍କର ଏହି ଗଳ୍ପ 'ଜାତକ' ବେଶ୍ ତୀର୍ଯକ ଓ ତୀକ୍ଷ୍ଣ । ଜୟନ୍ତଙ୍କ ପରି ଖୋଳପିନ୍ଧା ବୁଦ୍ଧିଜୀବୀମାନେ ବି ଲୋଭରେ ମୋହଗ୍ରସ୍ତ ହୋଇ ଏପରି ଯୌତୁକ ଦାବୀକରି ପାରନ୍ତି, ତାହା ନିଛକ ଭାବେ ଲେଖକ ବିଶ୍ୱଜିତ୍ ଦାସ ପ୍ରତିପାଦନ କରିଅଛନ୍ତି ।

## ଚତୁର୍ଥ ଅଧ୍ୟାୟ

# ବିଶ୍ୱଜିତ୍ ଦାସଙ୍କ ଅନନ୍ୟ ନାଟ୍ୟ ପ୍ରୟୋଗ ରୀତି

ନାଟ୍ୟକାର ନାଟକଟିଏ ରଚନା କଲାପରେ ଏବଂ ତାହା ରଂଗମଞ୍ଚରେ ମଞ୍ଚସ୍ଥ ହେଲାପରେ ନାଟ୍ୟକାରର ବାର୍ତ୍ତା ଜନସାଧାରଣଙ୍କ ପାଖକୁ ଚାଲିଯାଏ । ନାଟକର ଭଲମନ୍ଦ ଚର୍ଚ୍ଚା ହୁଏ । ଉତ୍କୃଷ୍ଟ ତଥା ପ୍ରଭାବଶାଳୀ ନାଟକଟିଏ ହୋଇଥିଲେ ତାହା ଜନାଦୃତି ପାଏ ଏବଂ ନାଟ୍ୟ ସାହିତ୍ୟକୁ ସୁସମୃଦ୍ଧ କରେ ।

ନାଟକଟି ଯେତେ ପ୍ରଭାବଶାଳୀ ହୋଇଥିଲେ ମଧ୍ୟ ତାହା ଯଥାରୀତିରେ ନିର୍ଦ୍ଦେଶିତ ନ ହେଲେ ବା ନାଟକର ପ୍ରୟୋଗରୀତି ଯଥାର୍ଥ ନ ହେଲେ ନାଟକଟି ସାଫଲ୍ୟ ହାସଲ କରିବାରେ ଅକ୍ଷମ ହୋଇପଡ଼େ । ତେଣୁ ଦକ୍ଷ ଅଭିନେତା ଅଭିନେତ୍ରୀଙ୍କୁ ନେଇ ନିର୍ଦ୍ଦେଶକ ସୁଚାରୁରୂପେ ନାଟକଟିକୁ ମଞ୍ଚାୟନ କରିବାର ଆବଶ୍ୟକତା ରହିଛି ।

ନାଟକ ସାହିତ୍ୟର ଏକ ବଳିଷ୍ଠ ବିଭାଗ । ନାଟ୍ୟକାରର ବାର୍ତ୍ତାଟି ନାଟକରେ ହିଁ କେବଳ ଜନସାଧାରଣଙ୍କ ପାଖରେ ଖୁବ୍ ଶୀଘ୍ର ପହଞ୍ଚି ପାରେ । ସାହିତ୍ୟର ଅନ୍ୟାନ୍ୟ ବିଭାଗ ଯଥା କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ପରି ନାଟକ ମଧ୍ୟ ବିଭିନ୍ନ ଉପାଦାନରେ ସୃଷ୍ଟି ହୋଇଥାଏ । କାହାଣୀର ଛତ୍ରେଛତ୍ରେ ରସ, ରଙ୍ଗ, ସଂଗୀତ, ଦ୍ୱନ୍ଦ୍ୱ ବା ସଂଘାତ, ନାଟକୀୟତା ଓ ଚରିତ୍ର ବିକାଶ ମଧ୍ୟରେ ନାଟକ ଜନଗ୍ରାହୀ ହୋଇଉଠେ । ମନୋରଂଜନର ଅନ୍ତରାଳେ ଦର୍ଶକ ସମାଜର ବାସ୍ତବ ରୂପରାଗକୁ ନିଚ୍ଛକ ଭାବେ ଉପଲବ୍ଧି କରିପାରେ ।

ତେଣୁ କେବଳ ନାଟକ ରଚନା ନିମନ୍ତେ ନୁହେଁ, ସମାଜର ବାସ୍ତବ ସତ୍ୟକୁ ଜନଦରବାରରେ ଉପସ୍ଥାପନ କରି ସାଧାରଣ ଜନମାନସରେ ସମାଜ ସଚେତନତା ଜାଗ୍ରତ କରିବା ସଙ୍ଗେ ସଙ୍ଗେ ସମାଜକୁ ସୁସ୍ଥ କରି ଗଢ଼ି ତୋଳିବା ନିମନ୍ତେ ନାଟ୍ୟକାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ସାହିତ୍ୟରେ ସମାଜର ବାସ୍ତବ ଚିତ୍ର ପ୍ରତିଫଳିତ ହୋଇଥାଏ ସତ, ତଥାପି

ପ୍ରତିକ୍ଷେତ୍ରରେ ନାଟ୍ୟକାରଙ୍କୁ ଅଙ୍ଗୀକାରବଦ୍ଧ ହେବାକୁ ପଡ଼ିଥାଏ । ନାଟ୍ୟକଳାର ବିଭିନ୍ନ ଉପାଦନ ମଧ୍ୟରେ ସମାଜକୁ ଦିଗ୍‌ଦର୍ଶନ ଦିଏ ନାଟ୍ୟକାର ।

ନାଟକଟିକୁ ଯଥାର୍ଥ ରୂପ ଦେବା ନିମନ୍ତେ ଆବଶ୍ୟକ ଏକନିଷ୍ଠ ନାଟ୍ୟକର୍ମୀ । ନାଟ୍ୟକର୍ମୀ କହିଲେ ଅଭିନେତା ଅଭିନେତ୍ରୀଙ୍କଠାରୁ ଆରମ୍ଭ କରି ନାଟ୍ୟ ସଂଗଠକ, ପରିଚାଳକ, ମଞ୍ଚ ପରିଚାଳକ, ନାଟ୍ୟ ସଂସ୍ଥାର ସହଯୋଗୀ ସଞ୍ଚାଳକ ଓ ସଭ୍ୟସଭ୍ୟା ସମେତ ଆଲୋକ ଓ ଶବ୍ଦ ସଂଚାଳକ, ସଂଗୀତ ଶିଳ୍ପୀ, କଣ୍ଠଶିଳ୍ପୀ, ବାଦ୍ୟକାର ବୃନ୍ଦ ଓ ନୃତ୍ୟ ନିର୍ଦ୍ଦେଶକ ପର୍ଯ୍ୟନ୍ତ ସମସ୍ତଙ୍କର ଏକାଗ୍ରତା ଓ କର୍ମନିଷ୍ଠତା ଆବଶ୍ୟକ । ଏହାଛଡ଼ା ଆଉ ଦୁଇଟି ଉପାଦାନ ନାଟକ ପରିବେଷଣ କ୍ଷେତ୍ରରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତାହା ହେଲା ମଞ୍ଚସଜ୍ଜା ଓ ରୂପସଜ୍ଜା । ନାଟକ ପରିବେଷଣକୁ ଏହି ଦୁଇଟି ଦିଗ ଖୁବ୍ ବଳିଷ୍ଠ କରି ଗଢ଼ି ତୋଳେ । ନାଟକର ସ୍ୱାଭାବିକତା ତଥା ବାସ୍ତବ ରୂପରେଖକୁ ମଞ୍ଚସଜ୍ଜା ହିଁ ଯଥାରୀତିରେ ପ୍ରକଟିତ କରିଥାଏ । ଯେଉଁ ନାଟ୍ୟ ସଂସ୍ଥାରେ ନାଟ୍ୟକର୍ମୀମାନେ ଯେତେ ସକ୍ରୀୟ ଓ ଶୃଙ୍ଖଳିତ ସେ ନାଟ୍ୟସଂସ୍ଥା ସେତେ ସଂଭ୍ରାନ୍ତ ଓ ଅଗ୍ରଗାମୀ । ତାହାର ପରିବେଷଣ ଶୈଳୀ ସେତେ ଉନ୍ନତ ଓ ମନୋରମ ।

ସମଗ୍ର ନାଟ୍ୟକର୍ମରେ ନାଟ୍ୟକାର ଓ ନିର୍ଦ୍ଦେଶକର ଭୂମିକା ଅଗ୍ରଗଣ୍ୟ ଓ ଗୁରୁତ୍ୱପୂର୍ଣ୍ଣ ହେଲେ ହେଁ ଅନ୍ୟାନ୍ୟ ନାଟ୍ୟକର୍ମୀମାନଙ୍କ ବିନା ତତ୍ପରତାରେ, ବିନା କର୍ମନିଷ୍ଠତାରେ ନାଟକ ସଫଳତାର ସହ ମଞ୍ଚସ୍ଥ ହୋଇ ପାରେ ନାହିଁ କିମ୍ବା ସଂପୃକ୍ତ ନାଟ୍ୟସଂସ୍ଥା ଦୀର୍ଘସ୍ଥାୟୀ ହୋଇ ବଞ୍ଚି ରହିପାରେ ନାହିଁ । ତେଣୁ ଏ କ୍ଷେତ୍ରରେ ସମସ୍ତେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । କେହି ଜଣକୁ ବାଦ ଦେଇ କାର୍ଯ୍ୟଟିକୁ ସୁଚାରୁରୂପେ ଚଳାଇବା ସମ୍ଭବ ହୋଇପାରେ ନାହିଁ । ଯେ କୌଣସି ନାଟକରେ ସଫଳ ରୂପାୟନ ନିମନ୍ତେ ସଫଳ ନିର୍ଦ୍ଦେଶନା ଯେପରି ଜରୁରୀ, ଦକ୍ଷ ଅଭିନେତା, ଅଭିନେତ୍ରୀ ସେପରି ଆବଶ୍ୟକ ଓ ଅନ୍ୟାନ୍ୟ ପାର୍ଶ୍ୱ ନାଟ୍ୟକର୍ମୀଗଣ ମଧ୍ୟ ଠିକ୍ ସେହିପରି ଦକ୍ଷ ଓ କର୍ମନିଷ୍ଠ ହେବା ଏକାନ୍ତ ଜରୁରୀ ।

କାଳକାଳ ଧରି ସବୁ ଭାଷାରେ ନାଟ୍ୟକଳା ହିଁ ଜନସାଧାରଣଙ୍କ ମାନସ ପଟ୍ଟରେ ଏକ ଅଭୂତପୂର୍ବ ପ୍ରଭାବ ବିସ୍ତାର କରି ଆସିଛି । ଯେଉଁ ଦେଶର ମଞ୍ଚ ଯେତେ ଉନ୍ନତ, ସେ ଦେଶ ସେତେ ସମୃଦ୍ଧ । ଯେଉଁ ଦେଶର ନାଟ୍ୟକଳା ଯେତେ ସମୃଦ୍ଧ ସେ ଦେଶ, ସେ ଜାତି ସେତେ ଅଗ୍ରଣୀ ଓ ସେତେ ପ୍ରଗତିଶୀଳ । ଗୋଟିଏ ଦେଶର ନାଟ୍ୟ କଳାର ଅନ୍ତଃସ୍ୱର ହିଁ ସେ ଦେଶର ସମୃଦ୍ଧିର ପରିମାପକ । ତା'ର ମଞ୍ଚରୁ ତାର ଐତିହ୍ୟ ଓ ପରମ୍ପରାର ଇତିହାସ ସ୍ପଷ୍ଟ ସୂଚିତ ହୋଇଥାଏ । ସ୍ପଷ୍ଟ ପ୍ରତିଫଳିତ ତଥା ପ୍ରତିବିମ୍ବିତ ହୋଇଥାଏ । ତେଣୁ ଦେଶ ଓ ଜାତିର ସମ୍ମାନ ତଥା ସମୃଦ୍ଧି ନିମନ୍ତେ ନାଟ୍ୟକଳାର ଅଭିବୃଦ୍ଧି ଏକାନ୍ତ ଅପରିହାର୍ଯ୍ୟ ।

ପୂର୍ବରୁ କହିଛି ନାଟକର ସଫଳ ରୂପାୟନ ନିମନ୍ତେ ନିର୍ଦ୍ଦେଶକର ଭୂମିକା ଅତ୍ୟନ୍ତ

ଗୁରୁତ୍ୱପୂର୍ଣ୍ଣ । ଠିକ୍ ସେହିପରି ନାଟ୍ୟସଂସ୍ଥାର ମୁଖ୍ୟ ପରିଚାଳକର ଭୂମିକା ମଧ୍ୟ କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କଠାରେ ଏହି ନାଟ୍ୟକର୍ମର ପ୍ରତିଟି ଗୁଣ ଅତ୍ୟନ୍ତ ନିଖୁଣ ଭାବରେ ନିହିତ ଥିଲା । ସେ ଯେପରି ଜଣେ ପ୍ରଭାବଶାଳୀ ନାଟ୍ୟକାର, ଯେପରି ଜଣେ ସଫଳ ଉଚ୍ଚକୋଟିର ନିର୍ଦ୍ଦେଶକ, ସେପରି ଜଣେ ଦକ୍ଷ ଅଭିନେତା, ଠିକ୍ ସେହିପରି ମଧ୍ୟ ଜଣେ କୁଶଳୀ ସଂଗଠକ । ନିଜର ହୃଦୟବତ୍ତା ଓ ସ୍ନେହ ମମତାର ସୁଦୃଢ଼ ରଜ୍ଜୁରେ ସେ ନାଟ୍ୟକର୍ମୀମାନଙ୍କୁ ବାନ୍ଧି ରଖି ଯଥାରୀତିରେ ନାଟ୍ୟ ପରିବେଷଣ କରି ଚାଲିଥିଲେ । ଏହା କିଛି କମ୍ କଷ୍ଟ ସାପେକ୍ଷ ତଥା ଗୌରବର କଥା ନୁହେଁ ।

ବିଶ୍ୱଜିତ୍ ଦାସ ଥିଲେ ମୁଖ୍ୟତଃ ଦୁଇଟି ଅଗ୍ରଣୀ ନାଟ୍ୟସଂସ୍ଥା ଯଥା - 'ରୂପକାର ଓ 'ସଂକେତ'ର ମୁଖ୍ୟ ସଞ୍ଚାଳକ । ନାଟକ ଲେଖିବା, ନିର୍ଦ୍ଦେଶନା ଦେବା ଓ ତତ୍ ସହିତ ସଂଗଠନଟିକୁ ସୂଚାରୁରୂପେ ଚଳାଇବାରେ ସେ ଥିଲେ କେନ୍ଦ୍ରବିନ୍ଦୁ । ସେ ସଂଗଠନକୁ ଗତିଶୀଳ କରାଇ ଏକ ଶୀର୍ଷତମ ସୋପାନରେ ଉପନୀତ କରାଇ ପାରିଥିଲେ । ଏହି ସାଫଲ୍ୟ ପଛରେ ମଧ୍ୟ 'ରୂପକାର' ଓ "ସଂକେତ'ର ଶୃଙ୍ଖଳିତ ତଥା ଏକନିଷ୍ଠ ନାଟ୍ୟକର୍ମୀମାନଙ୍କ ଏକାନ୍ତ କର୍ମନିଷ୍ଠା କେତେକାଂଶରେ ସହାୟକ ବୋଲି ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ହେବ ।

ନାଟ୍ୟ ପରିବେଷଣ କ୍ଷେତ୍ରରେ ମଞ୍ଚରେ ଯେଉଁମାନେ ନାଟକର ରୂପ ଦିଅନ୍ତି- ସେହି ଅଭିନେତା ଅଭିନେତ୍ରୀମାନେ ସେହି ସମୟ ପାଇଁ ଦର୍ଶକଙ୍କ ମନରେ ମାୟା ସୃଷ୍ଟି କରିଥାନ୍ତି ଏବଂ ଦର୍ଶକମାନଙ୍କ ଚିତ୍ତ ଆକର୍ଷଣ କରି ମନୋରଂଜନ ପ୍ରଦାନ କରିଥାନ୍ତି । ତା ପରେ ଗ୍ରୀନ୍‌ରୁମ୍‌କୁ ଆସି ମୁହଁରୁ ରଙ୍ଗ ପୋଛି ଦେଲାପରେ କଳାକାରର ରଙ୍ଗରାଗ ଅନ୍ତରାଳରେ ରହିଯାଏ । ସେହି ସୀମିତ ସମୟ ପାଇଁ ଯାହାକିଛି କରତାଳି, ଯାହାକିଛି ପ୍ରଶଂସା ବା ଯାହାକିଛି ପୁରସ୍କାର । ନାଟ୍ୟ ଇତିହାସର ପରିଧି ମଧ୍ୟରେ ଯଥାର୍ଥ ଭାବରେ ନାଟ୍ୟକାର ପରି ନିର୍ଦ୍ଦେଶକର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଅନ୍ୟ ଦୃଷ୍ଟିରୁ ଦେଖିବାକୁ ଗଲେ ଅଭିନେତା ଅଭିନେତ୍ରୀ ତଥା ଅନ୍ୟାନ୍ୟ ନାଟ୍ୟକର୍ମୀମାନେ ଯଥାରୀତିରେ ଆଲୋଚିତ ତଥା ସମ୍ମାନିତ ହେବା ଅପରିହାର୍ଯ୍ୟ ।

ବିଶ୍ୱଜିତ୍ ଦାସଙ୍କ ନାଟ୍ୟ ଅନୁଷ୍ଠାନରେ ଯେଉଁମାନେ ଅଭିନେତା, ଅଭିନେତ୍ରୀ ଓ ସଂଗଠନରେ ଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଜି ଅଭିନୟ କ୍ଷେତ୍ରରେ, ନିର୍ଦ୍ଦେଶନା କ୍ଷେତ୍ରରେ ପ୍ରତିଷ୍ଠିତ । ଯେଉଁ ଅନ୍ୟ ନାଟ୍ୟକର୍ମୀମାନେ ଥିଲେ ସେମାନେ ମଧ୍ୟ ନିଜ ନିଜ ଗୁଣରେ ଓ ଅନ୍ୟାନ୍ୟ ସାଂଗଠନିକ କ୍ଷେତ୍ରରେ ଆଜି ବେଶ୍ ସୁନାମ ଅର୍ଜନ କରିପାରିଛନ୍ତି ।

ସେତେବେଳେ ଯେଉଁମାନେ ବିଶ୍ୱଜିତ୍‌ବାବୁଙ୍କ ନାଟକରେ ଶୃଙ୍ଖଳିତ ନାଟ୍ୟକର୍ମୀ ଭାବେ କାର୍ଯ୍ୟ କରୁଥିଲେ ସେମାନେ ହେଲେ ସର୍ବଶ୍ରୀ ୰ଅସୀମବସୁ, ୰ଏକାଦଶୀ ପ୍ରସାଦ ବୋଉତାଇ, ନଳିନୀକାନ୍ତ ରାୟ, ଧୁରନ୍ଧର ବିଶ୍ୱାଳ, ନିର୍ମଳ କୁମାର ମହାପାତ୍ର, ୰ ସାରଦା ପ୍ରସନ୍ନ ଚୌଧୁରୀ, ପ୍ରମୋଦ ମହାପାତ୍ର, ମାଖନ୍ ଲାଲ୍ ଚକ୍ରବର୍ତ୍ତୀ, ୰ ଅନିମା ପେଦିନି, ପ୍ରସନ୍ନ ମହାପାତ୍ର, ସରସ୍ୱତୀ ଦେବୀ, ସୌଦାମିନୀ ଦେବୀ, ସଂଧ୍ୟା ମହାପାତ୍ର, ଅନୁରାଧା ମିଶ୍ର, ପ୍ରଭାତୀ ମିଶ୍ର, ସାରଙ୍ଗଧର ମିଶ୍ର, ଆଶୁତୋଷ ଦାସ, କମଳାକ୍ଷୀ ଦତ୍ତ, ଉମାକାନ୍ତ ସାହା, ୰ ରାଧା ପଣ୍ଡା, ୰ ଶ୍ରୀନିବାସ ମହାନ୍ତି, ରାମଚନ୍ଦ୍ର ମହାନ୍ତି, ଗୋଲକ ବିହାରୀ ମହାନ୍ତି, ବାଞ୍ଛାନିଧି ପଟ୍ଟନାୟକ, ୰ଅଜିତ୍ କର, ଅଶ୍ୱିନୀ ମହାନ୍ତି, ଶାନ୍ତନୁ ମହାପାତ୍ର, ନିଶାକାର ମଲିଆ, ଅନିଲ୍ କୁମାର ଗାଙ୍ଗୁଲୀ, ୰ବରେନ୍ଦ୍ରକୃଷ୍ଣ ଧଳ, ସଦାଶିବ ରଥ, ଲୋକନାଥ ମହାନ୍ତି, ସନ୍ତୋଷ ଦାସ, ଶରତ ପଟ୍ଟନାୟକ, ସୁଶାନ୍ତ ପ୍ରଧାନ, ସଂଧ୍ୟା ଆଚାର୍ଯ୍ୟ, ରାହାସ ମହାନ୍ତି ଓ ଦେବୀପ୍ରସାଦ ମହାନ୍ତି ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ନିଜର ପ୍ରତିଭା ବଳରେ ଏହି ଶୃଙ୍ଖଳିତ ସୈନିକମାନଙ୍କୁ ନେଇ ନାଟ୍ୟକାର ବିଶ୍ୱଜିତ୍ ଦାସ ଆଧୁନିକ ନାଟ୍ୟକଳାର ରଣାଙ୍ଗନରେ ସେନାଧ୍ୟକ୍ଷ ଭାବରେ ଅବତୀର୍ଣ୍ଣ ହୋଇ ଯେଉଁ ଜୟ ବୈଜୟନ୍ତୀ ଉଡ଼ାଇଛନ୍ତି, ତାହା ଯେ କାଳ କାଳ ପାଇଁ ସ୍ୱର୍ଣ୍ଣାକ୍ଷରରେ ଓଡ଼ିଆ ନାଟ୍ୟ ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ନାଟ୍ୟକାର ବିଶ୍ୱଜିତ୍ ଦାସ ନାଟ୍ୟକାର ଭାବରେ ଯେଉଁ ମର୍ଯ୍ୟାଦାର ଅଧିକାରୀ, ନିର୍ଦ୍ଦେଶକ ଭାବରେ ମଧ୍ୟ ତାଙ୍କର ଯଥେଷ୍ଟ ଦକ୍ଷତା ପ୍ରମାଣିତ ହୋଇଛି । ସାଧାରଣ ପାରମ୍ପରିକ ରୀତିଠାରୁ ତାଙ୍କ ନାଟ୍ୟ ପ୍ରୟୋଗର ରୀତି ସ୍ୱତନ୍ତ୍ର ଏବଂ ଅନନ୍ୟ । ତାଙ୍କ ନାଟ୍ୟ ନିର୍ଦ୍ଦେଶନାର ପ୍ରଧାନ ବୈଶିଷ୍ଟ୍ୟ ହେଲା ସେ ପ୍ରତୀକଧର୍ମୀ ମଞ୍ଚସଜ୍ଜା ମଧ୍ୟରେ ଭିନ୍ନ ପରିପାଟୀରେ ନାଟକ ପରିବେଷଣ କରାଇବାରେ ଏକ ଅନନ୍ୟ ବିନ୍ଧାଣୀ । ନାଟକରେ ଆଲୋକର ଜୋନ୍ କରାଇ ଭିନ୍ନ ଭିନ୍ନ ଦୃଶ୍ୟସଜ୍ଜାକୁ ଏକ ନୂତନ ପରିପାଟୀରେ ଅତ୍ୟନ୍ତ ସୁନ୍ଦର ଭାବରେ ନାଟକକୁ ଗତିଶୀଳ କରାଇବାରେ ନିର୍ଦ୍ଦେଶକ ବିଶ୍ୱଜିତ୍ ଦାସ ଥିଲେ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ । ନାଟ୍ୟ ଅନୁଷ୍ଠାନ 'ରୂପକାର' ଏବଂ ନିଜଦ୍ୱାରା ପ୍ରତିଷ୍ଠିତ ନାଟ୍ୟ ସଂସ୍ଥା 'ସଂକେତ'ରେ ସେ ନିଜ ନାଟକ ଗୁଡ଼ିକର ସଫଳ ନିର୍ଦ୍ଦେଶନା ଦେଇ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲେ । 'ରୂପକାର' ଓ 'ସଂକେତ' ବ୍ୟତୀତ 'ଉତ୍କଳ ରଙ୍ଗମଞ୍ଚ' ଦ୍ୱାରା ପରିବେଷିତ ନାଟକରେ ମଧ୍ୟ ନିଜ ଅନନ୍ୟ ପ୍ରୟୋଗଧାରାର ସ୍ୱାତନ୍ତ୍ର୍ୟ ପ୍ରକଟିତ କରି ଯଶସ୍ୱୀ ହୋଇ ପାରିଛନ୍ତି । ତାଙ୍କ ରଚିତ ନାଟକ 'ମୃଗୟା' 'ନିଶିପଦ୍ମ', 'ଶୁଣସୁଜନେ', 'ସମ୍ରାଟ', 'ପାପୀ' ଆଦିର ପ୍ରୟୋଗ ଏପରି ଅସାଧାରଣ ଯେ ଯାହାକି ଦର୍ଶକ / ପାଠକମାନଙ୍କୁ ଅଭିଭୂତ କରାଏ ।

## ଚଳଚିତ୍ର ନିର୍ଦ୍ଦେଶନା

ବିଶ୍ୱଜିତ୍ ଦାସ ନାଟ୍ୟ ପ୍ରୟୋଗ କ୍ଷେତ୍ରରେ ସମସ୍ତ ପରୀକ୍ଷା ନିରୀକ୍ଷା ତଥା ଯଥାର୍ଥ ସଫଳତା ହାସଲ କରିବାପରେ ସେ ଚଳଚିତ୍ର ନିର୍ଦ୍ଦେଶନାକୁ ପାଦ ବଢ଼ାଇଥିଲେ । ସେ ଖୁବ୍ ସଫଳତାର ସହ ଓଡ଼ିଆ ଚଳଚିତ୍ର 'ନିଝୁମ୍ ରାତିର ସାଥୀ' ଓ 'ପ୍ରିୟତମା' ନିର୍ଦ୍ଦେଶନା ଦେଇଥିଲେ । ଏହି ଦୁଇଟିଯାକ ଚଳଚିତ୍ର ଯଥେଷ୍ଟ ବ୍ୟବସାୟିକ ସଫଳତା ମଧ୍ୟ ହାସଲ୍ କରିଥିଲା । କିନ୍ତୁ ସରକାରୀ ଚାକିରିର ଚାପ ତାଙ୍କୁ ଆଉ ଏ ଦିଗରେ ବିଶେଷ ଅଗ୍ରସର ହେବାକୁ ସୁଯୋଗ ଦେଇନଥିଲା । ପରବର୍ତ୍ତୀ ସମୟରେ ସେ କେତେକ ପ୍ରଯୋଜକ ମାନଙ୍କ ଦ୍ୱାରା ଚଳଚିତ୍ର ନିର୍ଦ୍ଦେଶନା ଦେବାକୁ ନିମନ୍ତ୍ରଣ ପାଇଥିଲେ ମଧ୍ୟ ତାହା ଗ୍ରହଣ କରିବାକୁ ସମର୍ଥ ହୋଇ ପାରିନଥିଲେ । ଏତଦ୍ ବ୍ୟତୀତ ସେ ମଧ୍ୟ ଓଡ଼ିଆ ଚଳଚିତ୍ର 'କାବେରୀ', 'ତୁଣ୍ଡବାଇଦ', 'ନାଗଫାଶ', 'ଗୌରୀ' ଆଦି ଚଳଚିତ୍ର ନିମନ୍ତେ ସଂଳାପ ରଚନା କରି ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଅଛନ୍ତି । ତାଙ୍କ ରଚିତ ଦୂରଦର୍ଶନରେ 'ସତ୍ୟ' ଓ 'ସାଧୁ ସାବଧାନ' ବହୁବାର ପ୍ରସାରିତ ହୋଇଅଛି । ସେ 'ୱାର୍ଲଡ ଥିଏଟର ଡେ' ବୃତ୍ତଚିତ୍ର ମଧ୍ୟ ରଚନା କରିଥିଲେ । ନାଟ୍ୟ ନିର୍ଦ୍ଦେଶନା ହେଉ ବା ଚଳଚିତ୍ର ନିର୍ଦ୍ଦେଶନା, ସବୁ କ୍ଷେତ୍ରରେ ତାଙ୍କର ନୂତନତା ତାଙ୍କୁ ଯେ ଏକ ଅନନ୍ୟ ନିର୍ଦ୍ଦେଶକର ସମ୍ମାନ ପ୍ରଦର୍ଶନ କରିଛି ଏଥିରେ ସନ୍ଦେହର ଅବକାଶ ନାହିଁ । ବିଶ୍ୱଜିତ୍ ଦାସ ବିଭିନ୍ନ ସମୟରେ ଓଡ଼ିଶାର ସାଂସ୍କୃତିକ ପଦ ପଦବୀରେ ରହି ବହୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିଛନ୍ତି । ସେ କେବେ ଓଡ଼ିଶା ଚଳଚିତ୍ର ବିକାଶ ପରିଷଦର ସଭ୍ୟ ହୋଇଛନ୍ତି ତ କେବେ ଚଳଚିତ୍ର ପୁରସ୍କାର ନିମନ୍ତେ ବିଚାରକ ହୋଇଛନ୍ତି । ନାଟ୍ୟକାର ବିଶ୍ୱଜିତ୍ ଦାସ ତାଙ୍କ କାଳଜୟୀ ପ୍ରତିଭା ନିମନ୍ତେ ଯେଉଁ ପୁରସ୍କାରମାନ ପାଇବା କଥା, ସେ ପାଇ ନାହାନ୍ତି । ଉଭୟ ନାଟ୍ୟ ରଚନା ଏବଂ ନାଟ୍ୟ ନିର୍ଦ୍ଦେଶନାରେ ସେ ଏକ ଅପୂର୍ବ ଓ ଅନନ୍ୟ କଳାକାର ।

୧୯୫୭ ମସିହାରେ ବିଶ୍ୱଜିତ୍ ଦାସ ତାଙ୍କ ରଚିତ ନାଟକ 'ବହ୍ନି' ନିମନ୍ତେ ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇ ବିଶେଷ ଚର୍ଚ୍ଚିତ ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ତାଙ୍କର ଉଚିତ୍ ପ୍ରାପ୍ୟ ପାଇପାରି ନାହାନ୍ତି । ଅବଶ୍ୟ ୧୯୬୪ ମସିହାରେ ତାଙ୍କର ସଫଳ ନାଟ୍ୟ ନିର୍ଦ୍ଦେଶନା ନିମନ୍ତେ ସେ ପୁରସ୍କୃତ ହୋଇଥିବାବେଳେ ୧୯୮୨ ମସିହାରେ ରଙ୍ଗମଞ୍ଚକୁ ତାଙ୍କର ଅବଦାନ ନିମନ୍ତେ ସେ ଓଡ଼ିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

ଓଡ଼ିଆ ଚଳଚିତ୍ର ଜଗତକୁ ତାଙ୍କର ଅବଦାନ ନିମନ୍ତେ ୧୯୮୭ରେ ସେ ଓଡ଼ିଶା ସିନେକ୍ରିଟିକ୍ ଆସୋସିଏସନ୍ ଦ୍ୱାରା ସମ୍ମାନିତ ହୋଇଥିବାବେଳେ ୧୯୮୮ ମସିହାରେ ସେ ଓଡ଼ିଆ ଚଳଚିତ୍ର ଜଗତକୁ ତାଙ୍କର ଅବଦାନ ନିମନ୍ତେ ଓଡ଼ିଶା ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଅଛନ୍ତି । ସେ କେବେ ଓଡ଼ିଶା ସଂଗୀତ ଏକାଡେମୀର ସଦସ୍ୟ ରହିଛନ୍ତି ତ କେବେ ପୂର୍ବାଞ୍ଚଳ ନାଟକ ମହୋତ୍ସବର ବିଚାରକ ହୋଇଅଛନ୍ତି ।

## ପଞ୍ଚମ ଅଧ୍ୟାୟ

# ଓଡ଼ିଆ ସାହିତ୍ୟକୁ ବିଶ୍ୱଜିତ୍ ଦାସଙ୍କ ଅବଦାନ

ଓଡ଼ିଆ ସାହିତ୍ୟକୁ ବିଶ୍ୱଜିତ୍ ଦାସଙ୍କ ଅବଦାନର ପଟାନ୍ତର ନାହିଁ । ବିଶେଷକରି ଓଡ଼ିଆ ନାଟ୍ୟ ସାହିତ୍ୟକୁ ସେ ଯେପରି ଭାବେ ଋଦ୍ଧିମନ୍ତ କରି ଯାଇଛନ୍ତି ଏବଂ ଓଡ଼ିଆ ନବନାଟ୍ୟ ଧାରାକୁ ସେ ଯେପରି ଭାବେ ପ୍ରତିଷ୍ଠା କରି ଯାଇଛନ୍ତି ସେଥିନିମନ୍ତେ ସେ ଯେ ଓଡ଼ିଆ ନାଟ୍ୟ ସାହିତ୍ୟରେ ଚିରକାଳ ଅମର ହୋଇ ରହିବେ, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆ ଲୋକନାଟ୍ୟ ପରମ୍ପରାକୁ ପଛ କରି ପାରମ୍ପରିକ ନାଟ୍ୟ ରଚନା ଓ ପରିବେଷଣର ଯେଉଁ ଧାରାଟି ଗତିଶୀଳ ହୋଇଉଠିଥିଲା, ସେ ଶଗଡ଼ଗୁଳାକୁ ଭାଙ୍ଗି ମନୋରଞ୍ଜନ ଦାସ, ବିଶ୍ୱଜିତ୍ ଦାସ, ବିଜୟ ମିଶ୍ର, ରମେଶ ପ୍ରସାଦ ପାଣିଗ୍ରାହୀ, କାର୍ତ୍ତିକ ଚନ୍ଦ୍ର ରଥ, ରତ୍ନାକର ଚଇନି ଓ ହରିହର ମିଶ୍ର ଆଦି ଯେଉଁ ନବନାଟ୍ୟର ଧାରା ସୃଷ୍ଟି କଲେ – ତାହାର ଏକ କାଳଜୟୀ ପ୍ରଭାବ ପ୍ରତିଷ୍ଠିତ ହେଲା ଏବଂ ଓଡ଼ିଆ ନାଟ୍ୟ ସାହିତ୍ୟ ଅନ୍ୟାନ୍ୟ ପ୍ରତିବେଶୀ ନାଟ୍ୟ ସାହିତ୍ୟ ସହିତ ସମକକ୍ଷ ହେବାକୁ ସମର୍ଥ ହୋଇପାରିଲା ।

ବିଶ୍ୱଜିତ୍ ଦାସଙ୍କ ରଚନାର ବୈଶିଷ୍ଟ୍ୟ ଅନୁଧ୍ୟାନ କଲେ ବିସ୍ମିତ ଲାଗେ । ନୂତନ ଚିନ୍ତା ଚେତନା ସଂଭୂତ ନୂତନ ଆଙ୍ଗିକ ଓ ଆତ୍ମିକର ଭାବଭୂମିରେ ସେ ଯେଉଁ ନାଟକ ରଚନା କଲେ ଏବଂ ତା'ର ପରିବେଷଣ ପରିପାଟୀ ଯେପରି ନୂତନ ଭାବରେ ପ୍ରୟୋଗ କଲେ, ତାହା କେବଳ ଓଡ଼ିଆ ନାଟ୍ୟ ଧାରାରେ ଏକ ନୂଆ ମୋଡ଼ ସୃଷ୍ଟି କଲା ନାହିଁ, ପରନ୍ତୁ ଓଡ଼ିଆ ନାଟକରେ ଏକ ନୂତନ ଦିଶା ସୃଷ୍ଟି କରି ଓଡ଼ିଆ ନାଟ୍ୟ ଜଗତକୁ ବହୁ ଭାବରେ ସମୃଦ୍ଧ କରିବାକୁ ସମର୍ଥ ହୋଇପାରିଲା ।

**ନାଟ୍ୟ ରଚନାରୁ ସ୍ୱପ୍ନ ରଚନା : ସୁଦୀର୍ଘ ରୋମାଞ୍ଚକର ଭାବ କଳ୍ପନା**

ଜୀବନର ଚଲାପଥ ଯେତେ ସର୍ପିଳ ହେଲେ ବି ଏମିତି ଜଣେ ଜଣେ ବ୍ୟକ୍ତି

ଧରାବକ୍ଷରେ ପ୍ରତିଭାତ ହୁଅନ୍ତି, ଯେ କି ନିଜର ନିଷ୍ଠା, ସାରସ୍ୱତ ସାଧନା ଓ ଅଧ୍ୟୟନ ତଥା ଅନୁଶୀଳନ ବଳରେ ଅସୀମ ପ୍ରଜ୍ଞା ଓ ସୃଜନର ଅଧିକାରୀ ହୋଇପାରନ୍ତି । ସମଗ୍ର ଜନଗଣଙ୍କ ଉଦ୍ଦେଶ୍ୟରେ ସୃଷ୍ଟି କରିପାରନ୍ତି ଅମର ଦୃଷ୍ଟି ସମ୍ଭାର । ଓଡ଼ିଆ ନାଟ୍ୟ ଜଗତରେ ସେହିପରି ଜଣେ ଅମଳିନ ସ୍ରଷ୍ଟା ପୁରୁଷ ହେଲେ ନାଟ୍ୟକାର ବିଶ୍ୱଜିତ୍ ଦାସ । ପିଲାଦିନରୁ ନାଟକ ପ୍ରତି ଅହେତୁକ ମୋହ, ପିତା ନାଟ୍ୟକାର ସୁବୋଧ ଦାସଙ୍କ ସୃଜନ ପ୍ରଭାବ ଏବଂ ନିଜର ପ୍ରଜ୍ଞା ଓ ବହୁ ଶାସ୍ତ୍ରଦର୍ଶିତାର ଫଳ ସ୍ୱରୂପ ସେ ହୋଇପାରିଥିଲେ ଅମାପ ନାଟ୍ୟ ପ୍ରତିଭାର ଅଧିକାରୀ ।

ରେଭେନ୍ସା କଲେଜରେ ଛାତ୍ର ବେଳରୁ ସେ ଲେଖନୀ ଧରିଥିଲେ - ନାଟ୍ୟରଚନା ନିମନ୍ତେ । ସେହି କଞ୍ଚା ହାତର ସୃଷ୍ଟି ବି ଲାଭ କରିଥିଲା ସଫଳତାର ଜୟ ବୈଜୟନ୍ତୀ । ପ୍ରଥମେ ବିଭିନ୍ନ କଲେଜର ନାଟ୍ୟସଂସଦ ନିମନ୍ତେ ନାଟ୍ୟ ରଚନା ଆରମ୍ଭ କରିଥିବା ନାଟ୍ୟକାର ପରବର୍ତ୍ତୀ କାଳରେ ଓଡ଼ିଆ ନାଟ୍ୟ ଜଗତର ଅନ୍ୟତମ ପ୍ରବାଦ ପୁରୁଷ ଭାବେ ଦଣ୍ଡାୟମାନ ହୋଇପାରିଥିଲେ । ନାଟ୍ୟ ନିଶାରେ ମସ୍‌ଗୁଲ ବିଶ୍ୱଜିତ୍ ଗୋଟିକ ପରେ ଗୋଟିଏ ନାଟକ ରଚନା କରି ଦର୍ଶକ ଓ ପାଠକମାନଙ୍କର ନିକଟବର୍ତ୍ତୀ ହୋଇଛନ୍ତି ଏବଂ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଛନ୍ତି । ନିଜର ଜୀବନ ଓ ଜୀବିକାର ଛାଇ ଆଲୁଅ ଖେଳ ଭିତରେ ବିଶ୍ୱଜିତ୍ କେବେ ହାରିଯାଇ ନାହାନ୍ତି । ଆଦ୍ୟ ଜୀବନର ପହିଲି ପୁଲକ ତାଙ୍କୁ ଯେଉଁ ନାଟ୍ୟ ଉନ୍ମାଦନାରେ ଉନ୍ମତ୍ତ କରିଥିଲା, ସେଥିରେ ସେ ଭାସିଯାଇଥିଲେ ଅନେକ ଆଗକୁ । ଯାହାର ଫଳସ୍ୱରୂପ ତାଙ୍କ ଲେଖନୀରୁ କେବଳ ଅନେକ ନାଟ୍ୟ ସମ୍ଭାର ସୃଷ୍ଟି ହୋଇ ନ ଥିଲା ବରଂ ତାଙ୍କର ନାଟ୍ୟକର୍ମକୁ ଶତମୁଖର କରି ରଖିଥିଲା । ବିଶ୍ୱଜିତ୍ ଦାସ କେବଳ ଜଣେ ନାଟ୍ୟକାର ନ ଥିଲେ, ସେ ଥିଲେ ଏକାଧାରରେ ଜଣେ ପ୍ରଭାବଶାଳୀ ଲୋକପ୍ରିୟ ନାଟ୍ୟକାର, ଦକ୍ଷ ଅଭିନେତା ଓ ସଂଗଠକ, ସର୍ବୋପରି ଜଣେ କୁଶଳୀ ନାଟ୍ୟ ନିର୍ଦ୍ଦେଶକ ।

ନାଟ୍ୟକାର ବିଶ୍ୱଜିତ୍ ଦାସ ଥିଲେ ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା । ତାଙ୍କ ରଚନା କେବେ ଉଦ୍ଭଟତାର ଶଗଡ଼ଗୁଳାରେ ଧୂଳି ଧୂସରିତ ହୋଇ ଦର୍ଶକଙ୍କ ଠାରୁ ଦୂରେଇ ଯାଇନି । ବୌଦ୍ଧିକତା ନାଁରେ ସେ କେବେ ଉନ୍ନତ ନାଟକୀୟତା, ଯଥାର୍ଥ ସଂଘାତ, ଆକର୍ଷଣୀୟ କଥାବସ୍ତୁ ଓ ପାତ୍ରାଭିମୁଖୀ ସଂଳାପ ଏବଂ ନାଟକୀୟ ରସଚର୍ଯ୍ୟାଠାରୁ ଦୂରେଇ ଯାଇ ନାହାନ୍ତି, ଯାହା ଫଳରେ ତାଙ୍କ ନାଟକଗୁଡ଼ିକ ହୋଇପାରିଛି ସର୍ବଜନାଗ୍ରହୀ ।

'ବହ୍ନି' ଠାରୁ 'ନିଶି ପଦ୍ମ' ଯାଏ ବା 'ପ୍ରତାପ ଗଡ଼ରେ ଦି'ଦିନ' ଠାରୁ 'ନାଲିପାନ ରାଣୀ କଳାପାନ ଟୀକା' ଯାଏ, 'ମୃଗୟା' ଠାରୁ 'ନୂଆ ଜହ୍ନ' ଯାଏ ଅଥବା 'ମହାମାୟା ଅପେରା' ଠାରୁ 'ସେଇ ତିନିଜଣ' ଯାଏ ପ୍ରତିଟି ନାଟକ ତାଙ୍କର ମଞ୍ଚ ସାଫଲ୍ୟ ଲାଭ କରି

ତାଙ୍କୁ ଦେଇଛି ଅପୂର୍ବ ସଫଳତା । ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ବହୁପାଠିତା ଓ ବହୁଶାସ୍ତ୍ର ଦର୍ଶିତାର ଫଳସ୍ୱରୂପ ସେ ବହୁ ପ୍ରତିଷ୍ଠିତ ସ୍ରଷ୍ଟାଙ୍କ ସୃଷ୍ଟିର ଛାୟାରେ ମଧ୍ୟ ବହୁ ନାଟକ ରୂପାନ୍ତର କରି ଯଶସ୍ୱୀ ହୋଇଅଛନ୍ତି ।

ଏକାଙ୍କିକା ରଚନା ବିଶ୍ୱଜିତ୍ ଦାସଙ୍କର ଅନ୍ୟତମ ନିଆରା ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦନ କରେ । 'କୀଟ', 'ଗେଷ୍ଟହାଉସ୍', 'ପ୍ରବେଶ ପ୍ରସ୍ଥାନ', 'ଶ୍ରେଷ୍ଠାଂଶେ ନଟବର' ଓ 'ସୁଟିଂ ଚାଲିଛି' ଆଦି ବହୁ ଏକାଙ୍କିକାର ସେ ଜଣେ ସଫଳ ସ୍ରଷ୍ଟା । କେବଳ ସେକାଳରେ ନୁହେଁ, ଏବେ ବି ସ୍କୁଲ କଲେଜରେ ତାଙ୍କ ରଚିତ ଛୋଟ ନାଟିକାମାନ ମଞ୍ଚସ୍ଥ ହୋଇ ମଞ୍ଚ ସାଫଲ୍ୟ ପ୍ରଦାନ କରିବାରେ ସହାୟକ ହୋଇପାରିଛି ।

ସୂଚନା ଓ ଲୋକ ସଂପର୍କ ବିଭାଗର ଜଣେ ପଦସ୍ଥ ଅଧିକାରୀ ଭାବରେ ସେ ତାଙ୍କର ଦାୟିତ୍ୱ ସୁଚାରୁ ରୂପେ ତୁଲାଇ, ନିଜର ଘରସଂସାର ସହିତ ରାଶି ରାଶି ନାଟ୍ୟ ରଚନା କରିବା ସହିତ ଦୈନିକ ସମ୍ବାଦପତ୍ର ନିମନ୍ତେ ମଧ୍ୟ ନିୟମିତ ସ୍ତମ୍ଭ ରଚନା କରିବା ତାଙ୍କ ପ୍ରତିଭାର ସଫଳ ପରିଚାୟକ ।

## ଲୋକ ଚରିତ୍ର ଅଧ୍ୟୟନ

ପ୍ରତ୍ୟେକ ସ୍ରଷ୍ଟା ସାଧାରଣ ଭାବେ ସମାଜର ବାସ୍ତବ ଚିତ୍ର ସହିତ ଲୋକଚରିତ୍ରକୁ ଗଭୀର ଭାବେ ଅନୁଧ୍ୟାନ କରିବାକୁ ସମର୍ଥ ହୋଇଥାଆନ୍ତି । ଗଳ୍ପ, ଉପନ୍ୟାସ ହେଉ ବା ନାଟକ ପ୍ରତି କ୍ଷେତ୍ରରେ ସେହି ଏକାକଥା, ଏକା ଦୃଷ୍ଟାନ୍ତ ଆରୋପ କରାଯାଇପାରେ । କିନ୍ତୁ ନାଟକ କ୍ଷେତ୍ରରେ ନାଟ୍ୟକାରକୁ ଚରିତ୍ର ଚିତ୍ରଣ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ପଡ଼ିଥାଏ । ଯେଉଁ ନାଟ୍ୟକାର ଚରିତ୍ରଗୁଡ଼ିକୁ ନିଛକ ପରିପାଟୀରେ ଚିତ୍ରଣ କରିବାକୁ ସକ୍ଷମ ହୋଇଥାଏ ସେ ନାଟ୍ୟକାର ନାଟ୍ୟ ରଚନା କ୍ଷେତ୍ରରେ ସେତେ ସଫଳତା ଲାଭ କରେ ଏବଂ ଯଥାର୍ଥ ପ୍ରତିଷ୍ଠା ଅର୍ଜନ କରିବାକୁ ସମର୍ଥ ହୋଇପାରେ । ବିଶ୍ୱଜିତ୍ ଦାସଙ୍କର ଲୋକ ଚରିତ୍ର ଅଧ୍ୟୟନ କ୍ଷେତ୍ରରେ ଯଥେଷ୍ଟ ଦକ୍ଷତା ତଥା ଦୂରଦୃଷ୍ଟି ଥିଲା । ବିଶ୍ୱଜିତ୍ ଦାସଙ୍କ ନାଟକ ଓ ଏକାଙ୍କିକାର ପ୍ରତିଟି ଚରିତ୍ର ବେଶ୍ ମାପଚୁପ୍ ଏବଂ ନିର୍ଦ୍ଦିଷ୍ଟ ଆବଶ୍ୟକୀୟ ଛାଞ୍ଚରେ ସୁଗଠିତ । ନାରୀ ଚରିତ୍ର ହେଉ ବା ପୁରୁଷ ଚରିତ୍ର ସଭିଙ୍କ କ୍ଷେତ୍ରରେ ତାଙ୍କ ଚରିତ୍ର ଅଙ୍କନର କାରିଗରୀ ସ୍ପଷ୍ଟ ପ୍ରତୀୟମାନ ହୁଏ । ନାଟ୍ୟକାର ବିଶ୍ୱଜିତ୍ ଦାସ ଜୀବନକୁ, ସମାଜକୁ, ସର୍ବୋପରି ଏ ବିଶ୍ୱ ବ୍ରହ୍ମାଣ୍ଡକୁ ଯେପରି ତୀକ୍ଷ୍ଣ ଦୃଷ୍ଟିରେ ଅନୁଧ୍ୟାନ କରିଛନ୍ତି, ତାହାକୁ ଅତ୍ୟନ୍ତ ସଜୀବ ପରିପାଟୀରେ ଅଙ୍କନ କରି ସଫଳ ହୋଇପାରିଛନ୍ତି । ତେଣୁ ତାଙ୍କର ଏହି ଚରିତ୍ର ଚିତ୍ରଣର ଉପସ୍ଥାପନା ଏବଂ ସଫଳ ରୂପାୟନ ନିମନ୍ତେ ସେ ଯେ ଏକ ସ୍ୱତନ୍ତ୍ର ପ୍ରତିଭାର ଅଧିକାରୀ, କହିବାରେ ବାଧା ନାହିଁ ।

## ସାମାଜିକ ପରମ୍ପରା

ବିଶ୍ୱଜିତ୍ ଦାସଙ୍କ ସମଗ୍ର ନାଟ୍ୟ ରଚନାରୁ ପରିଦୃଷ୍ଟ ହୁଏ ଯେ ସେ ନୂତନ ଚିନ୍ତା ଚେତନାର ପରିମଣ୍ଡଳରେ ତାଙ୍କର ନାଟ୍ୟ ସୃଷ୍ଟିକୁ ପରିପୁଷ୍ଟ କରିଥିଲେ ମଧ୍ୟ ସେ କେତେବେଳେ ହେଲେ ସାମାଜିକ ପରମ୍ପରାଠୁ ଦୂରେଇ ଯାଇ ନାହାନ୍ତି । ଗୁଡ଼ାଏ ଅନାବନା ଆବୁରୁକାବୁରୁ ସଂଳାପ ସେ କେଉଁଠି ହେଲେ କେଉଁ ଚରିତ୍ର ମୁଖରେ ସଂଯୋଜନା କରି ନାହାନ୍ତି କିମ୍ବା ସାମାଜିକ ପରମ୍ପରାକୁ ବାଦ୍ ଦେଇ କିଛି ବୌଦ୍ଧିକତା ନାମରେ ଅଥବା ନୂତନତା ନାମରେ ସଂଯୁକ୍ତ କରିବାକୁ ଚେଷ୍ଟା କରି ନାହାନ୍ତି । ତାଙ୍କ ସୃଷ୍ଟିରେ ଶିକ୍ଷକ, ପୁଞ୍ଜିପତି, ବ୍ୟବସାୟୀ, ମନ୍ତ୍ରୀ ବା ରାଜନୈତିକ ନେତା, ବିଚାରପତି, ଯେପରି ଜୀବନ୍ତ ଭାବରେ ଚିତ୍ରିତ, ସେହିପରି ସାଧାରଣ ସରଳା ତରୁଣୀ, ସ୍ୱପ୍ନ ଦେଖୁଥିବା ରମଣୀ, ଷଡ଼ଯନ୍ତ୍ରଲିପ୍ତ ଖଳନାୟିକା, ଏକନିଷ୍ଠ ପ୍ରେମିକା, ସମସ୍ତେ ସୁଚାରୁ ରୂପେ ଅଙ୍କିତ। ସାମାଜିକ ଆବେଷ୍ଟନୀରୁ ବାହାରିଯାଇ ସେ କେବେ ବି ନୂତନତା ନାମରେ ଭେଳିକି ସୃଷ୍ଟି କରି ପାଠକ ଓ ଦର୍ଶକଙ୍କୁ ପ୍ରତାରିତ କରିବାକୁ ଚେଷ୍ଟା କରି ନାହାନ୍ତି ।

## ଓଡ଼ିଆ ନାଟ୍ୟ ସାହିତ୍ୟକୁ ବିଶ୍ୱଜିତ୍ ଦାସଙ୍କର ଅବଦାନର ତୁଳନା ନାହିଁ

ବିଶ୍ୱଜିତ୍ ଦାସ ଓଡ଼ିଆ ନାଟ୍ୟ ସାହିତ୍ୟରେ ଯେଉଁ ଅଖଣ୍ଡ କୀର୍ତ୍ତିସ୍ତମ୍ଭ ସ୍ଥାପନ କରି ଯାଇଛନ୍ତି, ତାର ତୁଳନା ନାହିଁ । ତାଙ୍କ ନାଟକମାନ ଯେ ନବନାଟ୍ୟ ଧାରାରେ କେବଳ ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ ସଦୃଶ ବିଦ୍ୟମାନ ତା ନୁହେଁ, ତାଙ୍କର ପ୍ରତିଟି ନାଟ୍ୟ ସୃଷ୍ଟି - ଗୋଟିଏ ଗୋଟିଏ ଓଡ଼ିଆ ନାଟ୍ୟ ଜଗତରେ ମାଇଲଖୁଣ୍ଟ । ଷାଠିଏ ବର୍ଷ ତଳେ ସେ ଯେଉଁ ନାଟକମାନ ରଚନା କରି ଲୋକପ୍ରିୟତା ଅର୍ଜନ କରିଥିଲେ ଏତେବର୍ଷ ପରେ ଆଜି ବି ସେ ନାଟକମାନ ତାର ସାମାଜିକତା ହରାଇ ନାହିଁ । ଆଜି ବି ସେ ନାଟକମାନ ମଞ୍ଚସ୍ଥ ହେଲେ ତାହା ଦର୍ଶକଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେବାର ସାମର୍ଥ୍ୟ ରକ୍ଷା କରିପାରିଛି । ଓଡ଼ିଶାର ବହୁ ପ୍ରଥିତଯଶା ସାହିତ୍ୟିକ ବିଶ୍ୱଜିତ୍ ଦାସଙ୍କ ନାଟ୍ୟକୃତି ଓ କୀର୍ତ୍ତିକୁ ଅନୁଶୀଳନ କରି ନିଜର ସୁଚିନ୍ତିତ ମତ ଓ ମନ୍ତବ୍ୟ ପ୍ରଦାନ କରିଯାଇଛନ୍ତି । ସେମାନଙ୍କର ମନ୍ତବ୍ୟ ଏଠାରେ ପ୍ରଣିଧାନଯୋଗ୍ୟ । ଓଡ଼ିଶାର ଅନ୍ୟତମ ବିଶିଷ୍ଟ କଥାଶିଳ୍ପୀ ଶାନ୍ତନୁ କୁମାର ଆଚାର୍ଯ୍ୟ ବିଶ୍ୱଜିତ୍ ଦାସଙ୍କ ସମ୍ପର୍କରେ କହନ୍ତି - ''ନିଜ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ସମ୍ପୂର୍ଣ୍ଣ ଚରିତାର୍ଥ କରିବା ଦିଗରେ ସେ ଅଗ୍ରସର ହେବାକୁ ଆରମ୍ଭ କରିଥିଲେ ସେଇ ୧୯୫୭ରୁ ୨୦୦୪ରେ ଶେଷନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ତାଙ୍କର ଲେଖନୀ ମାଧ୍ୟମରେ କେବଳ ନୁହେଁ - ଜଣେ ସୁପ୍ରସିଦ୍ଧ ନାଟ୍ୟ ନିର୍ଦ୍ଦେଶକ ଭାବେ ଉଭୟ ରଙ୍ଗମଞ୍ଚ ଏବଂ ସିନେମା ଜଗତରେ ।'' (ଅବିସ୍ମରଣୀୟ

ବ୍ୟକ୍ତିତ୍ୱ: ବିଶ୍ୱଜିତ୍ ଦାସ, ବିଶ୍ୱଜିତ୍ ସ୍ମରଣେ, ସମ୍ପାଦନା-ଡକ୍ଟର ଉପେନ୍ଦ୍ର ପ୍ରସାଦ ନାୟକ, ପୃ.୧୫)

ନାଟ୍ୟକାର ବିଶ୍ୱଜିତ୍ ଖୁବ୍ ଦୃଢ଼ପ୍ରତିଜ୍ଞ ଥିଲେ । ନିଜ ଉପରେ ଥିଲା ତାଙ୍କର ଅଖଣ୍ଡ ବିଶ୍ୱାସ । ନାଟ୍ୟ ରଚନା କ୍ଷେତ୍ରରେ ଓ ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ତାଙ୍କର ଥିଲା ଅମାପ ନିଷ୍ଠା ଓ ଦକ୍ଷତା । ଏ ସଂପର୍କରେ ଓଡ଼ିଶାର ପ୍ରଖ୍ୟାତ ନାଟ୍ୟ ସମାଲୋଚକ ଡକ୍ଟର ହେମନ୍ତ କୁମାର ଦାସ କହନ୍ତି, ''ନିଜର ବିଶ୍ୱାସ ସମ୍ପର୍କରେ ସେ ଅତ୍ୟନ୍ତ ସ୍ୱଷ୍ଟ, ନିର୍ଭୀକ ଏବଂ ସ୍ୱଚ୍ଛନ୍ଦ । ଏକାନ୍ତ ମାନବବାଦୀ ଏବଂ ସତ୍ୟର ଉପାସକ ଏଇ ନାଟ୍ୟକାର ତେଣୁ ଅନାୟାସରେ ଅନ୍ୟମାନଙ୍କ ଠାରୁ ବାରି ହୋଇପଡ଼ନ୍ତି ।'' (ବିଶ୍ୱଜିତ୍ ସ୍ମରଣେ-୨୦୧୩, ପୃ.୪୬)

ଓଡ଼ିଶାରୁ ବ୍ୟବସାୟିକ ରଙ୍ଗମଞ୍ଚର ପାଦପ୍ରଦୀପ ବିଲୀନ ହୋଇ ଆସିଥିବାବେଳେ ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ପୁରୋଧାମାନେ ନୂତନ ଆଙ୍ଗିକରେ ଓଡ଼ିଆ ନାଟକର ମୋଡ଼ ପରିବର୍ତ୍ତନ କରିଦେଇଥିଲେ । ସେହି ଧାରାର ଅନ୍ୟତମ ପ୍ରବକ୍ତା ନାଟ୍ୟକାର ବିଶ୍ୱଜିତ୍ ଦାସ ନିଜେ ଭୁବନେଶ୍ୱରରେ 'ରୂପକାର' ଓ 'ସଂକେତ' ପରି ନାଟ୍ୟସଂସ୍ଥାମାନ ଗଠନ କରି ତହିଁରେ ନିଜର ଯେଉଁ ନୂତନ ଆଙ୍ଗିକରେ ଗଢ଼ା ନାଟକମାନ ରଚନା କରି ପରିବେଷଣ କଲେ, ତାହା ଓଡ଼ିଆ ନାଟ୍ୟଧାରାକୁ ଦେଇଥିଲା ମାର୍ଜିତ ନାଟ୍ୟ ଗଠନର ଦିଶା । ବିଶିଷ୍ଟ ଔପନ୍ୟାସିକ ଡକ୍ଟର ବିଭୂତି ପଟ୍ଟନାୟକଙ୍କ ଭାଷାରେ ''ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା ବିଶ୍ୱଜିତ୍ ଦାସଙ୍କ 'ନିଶିପଦ୍ମ', 'ନିଜ ପ୍ରତିନିଧିଙ୍କ ଠାରୁ', 'ନାଲିପାନ ରାଣୀ କଳାପାନ ଟୀକା', 'ଶୁଣ ସୁଜନେ' ଏବଂ 'ମୃଗୟା' ଆଦି ନାଟକ ଓଡ଼ିଆ ନାଟକର ମୋଡ଼ ବଦଳାଇ ଦେଇଥିଲା ।''

ଓଡ଼ିଶାର ଅନ୍ୟତମ ପ୍ରତିଷ୍ଠିତ ନାଟ୍ୟକାର ବିଜୟ ମିଶ୍ର ବିଶ୍ୱଜିତ୍ ଦାସଙ୍କ ନାଟକର ଲୋକପ୍ରିୟତା ଏବଂ ତାଙ୍କ ନାଟ୍ୟ ପ୍ରତିଭା ଓ ନିର୍ଦ୍ଦେଶନାର ପ୍ରଶଂସା କରି କହନ୍ତି, ''ତାଙ୍କ ସଂଳାପରେ ତୀବ୍ର ଶ୍ଳେଷ, ଚରିତ୍ର ଚିତ୍ରଣରେ ଆଧୁନିକ ମଣିଷର ଯନ୍ତ୍ରଣା, ତାଙ୍କ ନାଟକକୁ ରଦ୍ଧିମନ୍ତ କରିଛି, + + + ନିର୍ଦ୍ଦେଶନା ଓ ପ୍ରଯୋଜନାରେ ତାଙ୍କ ଶୃଙ୍ଖଳା ଦେଖିଲେ ଅବାକ୍ ଲାଗେ ।'' (ବିଶ୍ୱଜିତ୍ ସ୍ମରଣେ-୨୦୧୩, ପୃ.୧୭)

ସାହିତ୍ୟ କ୍ଷେତ୍ରରେ ନାଟକ ହିଁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ବିଶ୍ୱଜିତ୍ ଦାସ ସେହି ମହନୀୟ କାର୍ଯ୍ୟଟିକୁ ଗ୍ରହଣ କରି ନେଇଥିଲେ । ତାଙ୍କ ଜୀବଦ୍ଦଶାରେ ଏତେଗୁଡ଼ିଏ ସଫଳ ନାଟକ ରଚନା କରି ସେ କେବଳ ନିଜେ ଲୋକପ୍ରିୟତା ଅର୍ଜନ କରିନାହାନ୍ତି, ସେ ଓଡ଼ିଆ ନାଟ୍ୟ ସାହିତ୍ୟକୁ ବହୁଭାବରେ ସମୃଦ୍ଧ କରିଅଛନ୍ତି ବୋଲି ନାଟ୍ୟକାର ଯଦୁନାଥ ଦାସ

ମହାପାତ୍ର ଉଲ୍ଲେଖ କରିଅଛନ୍ତି । "ଜୀବନର ଗୁରୁଗମ୍ଭୀର ଭାବଭାବନାକୁ ଲଘୁ, ହାସ୍ୟୋଜ୍ଜ୍ୱଳ ଓ ବ୍ୟଙ୍ଗ ବିଦ୍ରୂପ ଶୈଳୀରେ ପ୍ରକାଶ କରି ଜୀବନ ପ୍ରତି ଗୋଟାଏ ଆନ୍ତରିକ ମମତା ସୃଷ୍ଟି କରାଇଦେବା ଶ୍ରୀ ଦାସଙ୍କ ନାଟ୍ୟ ମାନସର ଯେ ପ୍ରାଣବନ୍ତ ଅଭିବ୍ୟକ୍ତି, ଏହା କହିବା ବୋଧହୁଏ ଅତିରଞ୍ଜିତ ହେବ ନାହିଁ" ବୋଲି ବିଶିଷ୍ଟ ସମାଲୋଚକ ପ୍ରଫେସର ବୈଷ୍ଣବ ଚରଣ ସାମଲ ମନ୍ତବ୍ୟ ପ୍ରଦାନ କରିଛନ୍ତି ।

(ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ନାଟ୍ୟମାନସ: ଏକ ଦୃଷ୍ଟିପାତ
ବିଶ୍ୱଜିତ୍ ନାଟ୍ୟ ବଳୟ, ୧୯୯୯, ସମ୍ପାଦନା-ଡକ୍ଟର ଉପେନ୍ଦ୍ର ପ୍ରସାଦ ନାୟକ, ପୃ.୪୬)

ବିଶ୍ୱଜିତ୍ ଦାସଙ୍କ ନାଟକର ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ଭାବେ ବାରିହୋଇପଡ଼େ । ସମାଜର ବାସ୍ତବ ଚିତ୍ର ସାଙ୍ଗକୁ ଚରିତ୍ର ଗୁଡ଼ିକର ସଜୀବ ଗଠନ ରୀତି ହେଉଛି ତାଙ୍କ ନାଟ୍ୟ ରଚନାର ପ୍ରଧାନ ବୈଶିଷ୍ଟ୍ୟ । କଥାଶିଳ୍ପୀ ଗୌରହରି ଦାସଙ୍କ ମନ୍ତବ୍ୟ ଏଠାରେ ଉଲ୍ଲେଖ କରାଯାଇ ପାରେ । ତାଙ୍କ ଭାଷାରେ ''ନୂଆ ଓ ନିଆରା ନାଟକ ନିବେଦନରେ ସେ ନିରବଚ୍ଛିନ୍ନ ଉଦ୍ୟମ କରିଚାଲିଛନ୍ତି । ବାସ୍ତବ ଜୀବନ ସହ ସମ୍ପର୍କ ହେତୁ ତାଙ୍କ ନାଟକଗୁଡ଼ିକ ଯେ ଅଧିକ ଜୀବନଧର୍ମୀ ଥିଲା, ଏଥିରେ ଦ୍ୱିରୁକ୍ତି ନାହିଁ । ସମସାମୟିକ ଜୀବନର ବ୍ୟର୍ଥତା ଓ ନୈରାଶ୍ୟ ଭିତରୁ ହିଁ ସେ ତାଙ୍କ ନାଟକର କାହାଣୀ ସଂଗ୍ରହ କରୁଥିଲେ । ଏହା ସାଙ୍ଗକୁ ବହୁପାଠିତା ଓ ଦେଶବିଦେଶର ନାଟକଗୁଡ଼ିକର ଅଧ୍ୟୟନ ତାଙ୍କ ଚରିତ୍ରମାନଙ୍କୁ ଉଭୟ ଧ୍ରୁପଦ ଏବଂ ସମସାମୟିକ ଭାବେ ଠିଆ କରୁଥିଲା ।''

(ବିଶ୍ୱଜିତ୍ ସ୍ମରଣେ-୨୦୧୩, ପୃ.୬୮)

ସୁତରାଂ ବିଶ୍ୱଜିତ୍ ଦାସ ଓଡ଼ିଆ ନାଟ୍ୟ ସାହିତ୍ୟକୁ ଯେଉଁ ଅବଦାନ ଦେଇ ଯାଇଛନ୍ତି ସେଥିନିମନ୍ତେ ସେ କେବଳ ଓଡ଼ିଆ ନାଟ୍ୟ ଜଗତରେ ନୁହେଁ, ସମଗ୍ର ଓଡ଼ିଆ ସାହିତ୍ୟ ଜଗତରେ ଯେ ଚିର ସ୍ମରଣୀୟ ହୋଇ ରହିବେ ଏଥିରେ ସନ୍ଦେହର ଅବକାଶ ନାହିଁ ।

---

ନାଟ୍ୟକାର ବିଶ୍ୱଜିତ୍ ଦାସ ଥିଲେ ଓଡ଼ିଆ ନାଟ୍ୟ ଜଗତର ଅନ୍ୟତମ କିର୍ତ୍ତୀଧର । ଓଡ଼ିଆ ନାଟ୍ୟସାହିତ୍ୟକୁ ତାଙ୍କର ଅବଦାନ ଅତୁଳନୀୟ । ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ନାଟ୍ୟକର୍ମୀ ଭାବେ ସେ ଅଶେଷ ଯଶର ଅଧିକାରୀ । ଓଡ଼ିଆ ନାଟ୍ୟ ରଚନା ଓ ପ୍ରୟୋଗ କ୍ଷେତ୍ରରେ ସେ ନାନାଦି ପରୀକ୍ଷା ନିରୀକ୍ଷା କରି ଓଡ଼ିଆ ନାଟ୍ୟସାହିତ୍ୟକୁ ବହୁଭାବରେ ସମୃଦ୍ଧ କରିଯାଇଛନ୍ତି । ବହୁ ବିଦେଶୀ ନାଟକକୁ ଓଡ଼ିଆ ଭାଷାରେ ନାଟ୍ୟ ରୂପାନ୍ତର କରିବା ତାଙ୍କ କୃତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ । ନାଟ୍ୟ ରଚନା ସହିତ ଜଣେ କୁଶଳୀ ନାଟ୍ୟ ନିର୍ଦ୍ଦେଶକ ଭାବେ ସେ ବିଶେଷ ଲୋକପ୍ରିୟତା ଅର୍ଜନ କରି ପାରିଥିଲେ । ତାଙ୍କ ରଚିତ ନାଟକଗୁଡ଼ିକର ଅଙ୍ଗ ଓ ଆତ୍ମା ଅତ୍ୟନ୍ତ ସ୍ୱଚ୍ଛ ଓ ପରିଚ୍ଛନ୍ନ । ଓଡ଼ିଆ ନାଟ୍ୟ ରଚନା ଓ ପ୍ରୟୋଗ ନିମନ୍ତେ ସେ ଯେ ଏକ ସ୍ୱତନ୍ତ୍ର ପ୍ରତିଭାର ଅଧିକାରୀ, ଏଥିରେ ସନ୍ଦେହ ନାହିଁ ।

ପ୍ରଫେସର ଉପେନ୍ଦ୍ର ପ୍ରସାଦ ନାୟକ ଓଡ଼ିଆ ସାହିତ୍ୟରେ ଏକ ପରିଚିତ ଓ ପ୍ରତିଷ୍ଠିତ ସ୍ରଷ୍ଟା ପୁରୁଷ । ଓଡ଼ିଆ କାବ୍ୟ କବିତା ଓ ନାଟ୍ୟରଚନାରେ ସେ ଯଥେଷ୍ଟ ପ୍ରସିଦ୍ଧି ଅର୍ଜନ କରିଥିଲେ ମଧ୍ୟ ଗଳ୍ପ, ଉପନ୍ୟାସ, ଶିଶୁସାହିତ୍ୟ, ଗବେଷଣା ଓ ସମାଲୋଚନା କ୍ଷେତ୍ରରେ ତାଙ୍କର ବିଶେଷ ଦକ୍ଷତା ପ୍ରତିପାଦିତ ହୋଇଅଛି ।

ମୂଲ୍ୟ : ୫୦ ଟଙ୍କା

ISBN : 978-93-87989-54-2

*Biswajit Das* (Odia)
Rs. 50/-


ସାହିତ୍ୟ ଅକାଦେମି

